ଉତ୍କଳ ସମ୍ମିଳନୀ ଗଠନପାଇଁ ସେତେବେଳେ ଉଦ୍ୟମ ଆରମ୍ଭ ହେଲା । ସେଥିପାଇଁ ଉତ୍କଳ ଗୌରବ ମଧୁସୂଦନ ଦାସ ମ୍ୟୁନିସିପାଲିଟି ପଡ଼ିଆରେ ଏ ସମ୍ପର୍କରେ ଆଲୋଚିତ ଏକ ସଭାରେ ଭାଷଣ ଦେଇଥିବା ମୋର ମନେଅଛି । ମଧୁବାବୁ ଓ ସୁରେନ୍ଦ୍ରନାଥ ବାନାର୍ଜୀଙ୍କର ଓଡ଼ିଶାର ସ୍ୱାର୍ଥ ନେଇ ସେତେବେଳେ ମତଭେଦ ଦେଖାଯାଇଥିଲା ଓ ମଧୁବାବୁ ଓଡ଼ିଶାର ସ୍ୱାର୍ଥରକ୍ଷାପାଇଁ ଏକ ସଙ୍ଗଠନର ଆବଶ୍ୟକତା ଅନୁଭବ କରୁଥିଲେ । ସେଥିରେ ସେ ସଫଳ ହୋଇ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା କରିଥିଲେ ।

୧୯୧୧ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରେ ଚତୁର୍ଥସ୍ଥାନ ଅଧିକାର କରି ମୁଁ ଆଇ. ଏସ୍-ସି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି । ପ୍ରଥମ ଶ୍ରେଣୀର ବୃତ୍ତି ମୋତେ ମିଳିଲା ନାହିଁ । କାରଣ ଆଇ. ଏସ୍-ସି. ରେ ପ୍ରଥମ ତିନିଜଣ ଓ ଆଇ. ଏ. ର ପ୍ରଥମ ଚାରିଜଣ ଛାତ୍ରଙ୍କୁ ଏହି ବୃତ୍ତି ମିଳୁଥିଲା । ମୁଁ ମାସକୁ କେବଳ ୨୦ ଟଙ୍କାର ବୃତ୍ତି ପାଇଲି । ଅଧିକ ପଢିବା ଏକ ପ୍ରଧାନ ସମସ୍ୟା ହେଲା । ରେଭେନ୍ସା କଲେଜରେ ବି. ଏସ୍-ସି. ଶ୍ରେଣୀ ନ ଥିଲା । ବି. ଏସ୍-ସି. ପଢ଼ିବାକୁ ହେଲେ କଲିକତା ଯିବାକୁ ପଡ଼ୁଥିଲା । ସେତେବେଳେ କେନ୍ଦୁଝରର ସରକାରୀ ଦେୱାନ ଶ୍ରୀ ବାସୁଦେବ କାନୁନଗୋ (ଶ୍ରୀ ନିତ୍ୟାନନ୍ଦ କାନୁନଗୋଙ୍କର ଦାଦା) ମୋତେ ସାହାଯ୍ୟ କଲେ । ମୁଁ ପୂର୍ବରୁ ଉଲ୍ଲେଖ କରିଛି ଯେ କଲିଜିଏଟ ସ୍କୁଲରେ ନାମ ଲେଖାଇବା ପରେ ମୁଁ କଟକରେ ଥିବା ତାଙ୍କ ବାସଗୃହର ବାହାର ଘରେ ରହି ପଢୁଥିଲି । ସେତେବେଳୁ ସେ ମୋତେ ଜାଣିଥିଲେ । ଏବେ ସେ ମୋତେ ୨୦ ଟଙ୍କା ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଲେ । ଏହିପରି ମୋର ମାସକୁ ୪୦ ଟଙ୍କା ହେଲା ।

## ପ୍ରେସିଡେନ୍ସି କଲେଜ

ମୁଁ କଲିକତା ଯାଇ ପ୍ରେସିଡେନ୍ସି କଲେଜରେ ନାମ ଲେଖାଇଲି ଓ ଇଡେନ ହିନ୍ଦୁ ହଷ୍ଟେଲରେ ରହିଲି । ପଢାପଢିର ଏହି ଆର୍ଥିକ ଦିଗ ସମ୍ପର୍କରେ ଆଉ ଏକ ଘଟଣା ଉଲ୍ଲେଖ କରିବି । ସେ ସମୟରେ ମୋହିନୀମୋହନ ଧର ମୟୂରଭଞ୍ଜର ଦେୱାନ ଥିଲେ । ତାଙ୍କର ପୁଅ ଶ୍ରୀ ଧୀରେନ୍ଦ୍ର ମୋହନ ଧର ୧୯୧୨ ମସିହାରେ ମାଟ୍ରିକୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପ୍ରେସିଡେନ୍ସି କଲେଜରେ ଯୋଗଦେଲେ । ମୋହିନୀ ବାବୁ ତାଙ୍କ ପୁଅ ରହୁଥିବା କୋଠରୀରେ ୮ ଜଣ ଭଲ ଛାତ୍ର ରହିବାପାଇଁ ଇଚ୍ଛା ପ୍ରକାଶ କଲେ । ମୁଁ ଏକ ନମ୍ବର ୱାର୍ଡରେ ରହୁଥିଲି । କାରଣ ସେଠାରେ କମ୍ ଭଡ଼ା

ପଢ଼ୁଥିଲା । ମୁଁ ଚତୁର୍ଥ ନମ୍ବର ଷ୍ଟୁଡ଼ିକୁ ଯିବାପାଇଁ ଶ୍ରୀ ଧର ଇଚ୍ଛାପ୍ରକାଶ କରି କହିଲେ ଯେ ସେ ମୋତେ ଅଧିକ ଖର୍ଚ୍ଚ ତୁଲାଇବାପାଇଁ ମାସକୁ ଦଶ ଟଙ୍କା ସାହାଯ୍ୟ ଦେବେ । ମୁଁ ଏଥିରେ ରାଜି ହୋଇ ଧୀରେନ୍ଦ୍ର ମୋହନ ଯେଉଁ କୋଠରୀରେ ରହୁଥିଲେ, ସେଥିରେ ରହିଲି ।

ମୁଁ ଏହି ଅଧିକ ଦଶ ଟଙ୍କା ସାହାଯ୍ୟ ପାଇବାପରେ ଶ୍ରୀ ବାସୁଦେବ କାନୁନ୍‌ଗୋଙ୍କୁ ଲେଖିଲି, ସେ ତାଙ୍କ ସାହାଯ୍ୟ ଦଶ ଟଙ୍କାକୁ କମାଇ ଦିଅନ୍ତୁ । ମୋର ୪୦ ଟଙ୍କାରୁ ବେଶୀ ଟଙ୍କା ଦରକାର ପଡ଼ୁ ନ ଥିଲା । ମୁଁ ଜୋତା ପିନ୍ଧୁ ନ ଥିଲି । କେବଳ ଧୋତି, କୁର୍ତ୍ତା । ଆଉ କୌଣସି ଆମୋଦ, ପ୍ରମୋଦ ନ ଥିଲା । ସେତେବେଳେ ଦିନକୁ ଦୁଇଥର ଖାଇବାପାଇଁ ମାସିକ ମେସ ଖର୍ଚ୍ଚ ଥିଲା ସାତ ଟଙ୍କା ଆଠ ଅଣା । ତେଣୁ ୪୦ ଟଙ୍କାରେ ଜଣେ ଚଳିବାରେ କିଛି ଅସୁବିଧା ହେଉ ନ ଥିଲା । ସ୍ନାତକୋତ୍ତର ଶ୍ରେଣୀରେ ମୁଁ ଆର୍ଥିକ ଦୃଷ୍ଟିରୁ ସମ୍ପୂର୍ଣ୍ଣ ଆତ୍ମନିର୍ଭରଶୀଳ ହୋଇଗଲି । ତାହା ମୁଁ ପରେ ଉଲ୍ଲେଖ କରିବି ।

ବାସୁବାବୁଙ୍କ ଋଣ ଆର୍ଥିକ ଦିଗରୁ ମୁଁ ପରିଶୋଧ କରିଦେଇଥିଲି ତାଙ୍କ ପୁଅର ପଢ଼ିବାବେଳେ ସାହାଯ୍ୟ କରି । କିନ୍ତୁ ସେତେବେଳେ ମୋର ଅତି ଦରକାର ସମୟରେ ସେ ସାହାଯ୍ୟ କରିଥିବାରୁ ତାଙ୍କର ବଦାନ୍ୟତା ମୁଁ କେବେ ପରିଶୋଧ କରିପାରିବି ନାହିଁ ।

ଧର ପରିବାରଙ୍କ ସହିତ ମୋର ଭଲ ଭାବରେ ଜଣାଶୁଣା ହୋଇଗଲା । ଶ୍ରୀମତୀ ଧର ମାତୃତୁଲ୍ୟ ସ୍ନେହଶୀଳା ଥିଲେ । ମୁଁ ତାଙ୍କର ଭଦ୍ର ଓ ଦୟାଳୁ ସ୍ୱଭାବରେ ଏତେ ଅଭିଭୂତ ହୋଇପଡ଼ିଥିଲି ଯେ ମୋର ଗୋଟିଏ ଝିଅର ନାମ ତାଙ୍କ ନାମାନୁସାରେ ରଖିଥିଲି । ଧୀରେନ୍ ବାବୁ ବାରିଷ୍ଟର ଭାବରେ କଲିକତା ହାଇକୋର୍ଟରେ ତାଙ୍କର ଆଇନ ବ୍ୟବସାୟ ଆରମ୍ଭ କରିଥିଲେ । ତାଙ୍କର ଭାଇ ଶ୍ରୀ ସତ୍ୟେନ୍ଦ୍ର ମୋହନ ଧର ଭାରତୀୟ ସିଭିଲ୍ ସର୍ଭିସ୍‌ରେ ଯୋଗ ଦେଇ ଖୁବ୍ ସୁନାମ ଅର୍ଜନ କରିଥିଲେ ।

## କଲିକତା ଛାତ୍ର-ଜୀବନ

କଲିକତାରେ ମୋର ଛାତ୍ର-ଜୀବନ ସମ୍ପର୍କରେ ଉଲ୍ଲେଖ କରୁଛି । ମୁଁ ପ୍ରେସିଡେନ୍‌ସି କଲେଜରେ ନାମ ଲେଖାଇ ହିନ୍ଦୁ ହଷ୍ଟେଲରେ ରହିବା ସମୟରେ ଓଡ଼ିଶାରୁ ପ୍ରାୟ ୧୦।୧୨ ଜଣ ଛାତ୍ର ସେଠାରେ ରହୁଥିଲେ । ସର୍ବଶ୍ରୀ ନଳିନୀକାନ୍ତ ଘୋଷ (ପରବର୍ତ୍ତୀ କାଳରେ ଶାସନ ବିଭାଗରେ ଯୋଗ ଦେଇଥିଲେ), ଗୋପବନ୍ଧୁ ଚୌଧୁରୀ (ବିଖ୍ୟାତ ନେତା), ନାରାୟଣ ମିଶ୍ର (ଅଧ୍ୟାପକ), ହରିହର ଦାସ (ବିଖ୍ୟାତ ଶିକ୍ଷକ ଓ ଲେଖକ ଶ୍ରୀ କୃପାସିନ୍ଧୁ ମିଶ୍ରଙ୍କ ଭାଇ ଓ ପୁରୀର ଜଣେ ଆଡ୍‌ଭୋକେଟ୍),

ପୂର୍ଣ୍ଣଚନ୍ଦ୍ରକାନ୍ତ ସେନ୍ (ଆଡ୍‌ଭୋକେଟ୍), ଗଜେନ୍ଦ୍ର ପ୍ରସାଦ ଦାସ (ପାଟଣା ହାଇକୋର୍ଟର ବିଖ୍ୟାତ ଆଡ୍‌ଭୋକେଟ୍), ଶ୍ୟାମଚନ୍ଦ୍ର ତ୍ରିପାଠୀ (ଓଡ଼ିଶାର ଶିକ୍ଷା ବିଭାଗର ଡିରେକ୍‌ଟର), ବ୍ରଜମୋହନ ପଣ୍ଡା (ସମ୍ବଲପୁରର ଜଣେ ଖ୍ୟାତନାମା ସାଧାରଣସେବୀ) ଦେବେନ୍ଦ୍ର ନାଥ ଗିରି (ବାଲେଶ୍ୱରର ଆଡ୍‌ଭୋକେଟ୍), ଭିଙ୍ଗାରପୁରର ରାଧାଶ୍ୟାମ ଦାସ ଚୌଧୁରୀ ଓ ବାଲେଶ୍ୱରର ରମେଶଚନ୍ଦ୍ର ପ୍ରଧାନ । ପୁରୀର ଜଣାଶୁଣା ଘୋଷ ପରିବାରର ଜଣେ କେହି ଘୋଷ ସେତେବେଳେ ସେ ହଷ୍ଟେଲରେ ଥିଲେ । କିନ୍ତୁ ସେ ଓଡ଼ିଆ ଛାତ୍ର-ମାନଙ୍କଠାରୁ ଦୂରରେ ରହୁଥିଲେ । ନାରାୟଣ ମିଶ୍ର ଓ ଗୋପବନ୍ଧୁ ଚୌଧୁରୀ ଖୁବ୍ ଭଲ ଖେଳାଳି ଥିଲେ ଓ ଖେଳାଳିମାନଙ୍କ ମଧ୍ୟରେ ବେଶ୍ ପ୍ରିୟ ହୋଇପାରିଥିଲେ । ବି. ଏସ୍-ସି. ଶ୍ରେଣୀମାନଙ୍କରେ ଶ୍ରୀ ରାଧାଶ୍ୟାମ ଦାସ ଚୌଧୁରୀ ଓ ମୁଁ ସହପାଠୀ ଥିଲୁ । ଅନ୍ୟମାନେ ଆମ ଉପରେ କମ୍ବା ତଳେ ପଢୁଥିଲେ ।

ଘରଠାରୁ ଦୂରରେ ରହୁଥିବା ଯୋଗୁଁ ଆମେମାନେ ବାରମ୍ବାର ଏକତ୍ର ମିଳିତ ହେଉଥିଲୁ । ଆମେ ଓଡ଼ିଆରେ ଏକ ହସ୍ତଲେଖା ପତ୍ରିକା ପ୍ରକାଶ କରି ହଷ୍ଟେଲ କମନ୍ ରୁମରେ ତାହା ରଖି ଦେଉଥିଲୁ । ମୁଁ ଏ ପତ୍ରିକାର ଦାୟିତ୍ୱରେ ଥିଲି । ଏହାର ନାମ ଥିଲା "ଆଶାଲତା" । ମୋର ମନେଅଛି, ଥରେ ଗୋଟିଏ ଘଟଣାରେ ବ୍ରହ୍ମପୁରର ଶଶିଭୂଷଣ ରଥ କଲିକତା ଆସି ଆମ ପାଖକୁ ଯାଇଥିଲେ ଓ ପତ୍ରିକା ବିଷୟ ଜାଣିଲେ । ସେଥିରେ ସେ ଏତେ ଉତ୍ସାହିତ ଅନୁଭବ କଲେ ଯେ, ଏହି ପତ୍ରିକାର ନାମକରଣ ଅନୁସାରେ ସେ ତାଙ୍କର ବିଖ୍ୟାତ ପତ୍ରିକା "ଆଶା"ର ନାମକରଣ ରଖିଥିଲେ । କଥା ମୋତେ ଥରେ କଥା ପ୍ରସଙ୍ଗରେ କହିଥିଲେ । ଆମର ଏ ପତ୍ରିକାଟି ବେଶୀ ଦିନ ବଞ୍ଚି ପାରିଲା ନାହିଁ । ଯେତେବେଳେ ଏହା ବନ୍ଦ ହୋଇଗଲା, ସେତେବେଳେ ଶ୍ରୀ ନାରାୟଣ ମିଶ୍ର ଏହାର ଦାୟିତ୍ୱରେ ଥିଲେ । ସେ ସେତେବେଳପର୍ଯ୍ୟନ୍ତ ବାହାରିଥିବା ହାତଲେଖା ପତ୍ରିକାଗୁଡ଼ିକ କମନ୍ ରୁମ୍‌କୁ ଉପହାରସ୍ୱରୂପ ଦେଇଦେଇଥିଲେ । ବୋଧହୁଏ ସେଗୁଡ଼ିକ ଯଥାସମୟରେ ଅନ୍ତର୍ହିତ ହୋଇଯାଇଥିବ ।

## ଇଡେନ୍ ହିନ୍ଦୁ ହଷ୍ଟେଲ

ମୁଁ ପୂର୍ବରୁ ଉଲ୍ଲେଖ କରିଛି ଯେ, ଇଡେନ ହିନ୍ଦୁ ହଷ୍ଟେଲ କେତୋଟି ଓ୍ୱାର୍ଡ଼ରେ ବିଭକ୍ତ ହୋଇଥିଲା । ପରୀକ୍ଷାର୍ଥୀମାନଙ୍କ ପାଇଁ ପ୍ରତ୍ୟେକ ଓ୍ୱାର୍ଡ଼ରେ କେତୋଟି ଜଣିକିଆ କୋଠରି ଥିଲା । ହଷ୍ଟେଲର ଅଧିକାଂଶ ଛାତ୍ର ବଙ୍ଗଳାର ଥିଲେ ମଧ୍ୟ ଓଡ଼ିଶା, ବିହାର ଓ ଆସାମର ମଧ୍ୟ ବହୁ ଛାତ୍ର ଥିଲେ । ସରଭାନ୍ ମୁଖି ନାମକ ସାମ୍ବଲର ଜଣେ

ଗୁଡ଼ିଏ ଯେ କି ମୋର ସହପାଠୀ ଥିଲେ, ସେ ମଧ୍ୟ ଏ ହଷ୍ଟେଲରେ ରହୁଥିଲେ । କେବଳ ବିହାରୀମାନଙ୍କୁ ଛାଡ଼ିଦେଲେ ମେସ୍‌ରେ ସବୁଗୁଡ଼ିଏ ଏକା ଟେପେଇରେ ଖାଉଥିଲେ । ବିହାରୀମାନେ ନିରାମିଷାଶୀ ହୋଇଥିବାରୁ ସେମାନେ ଅଲଗା ମେସ୍ କରିଥିଲେ । କିନ୍ତୁ ଅନ୍ୟମାନେ ଏକା ଟେପେଇରେ ଖାଉଥିଲେ ମଧ୍ୟ ଖାଇବା ଘର ଅଲଗା ଅଲଗା ଥିଲା । ବ୍ରାହ୍ମଣ, ବୈଶ୍ୟ, ଶୂଦ୍ର ଓ ଅନ୍ୟମାନଙ୍କର ଭିନ୍ନ ଭିନ୍ନ ଖାଇବା ଘର ଥିଲା । ଅଥ ସମୟରେ ବ୍ରାହ୍ମଣମାନଙ୍କ ଖାଇବା ଘରକୁ ଅନ୍ୟମାନେ ପଶିବା କଷ୍ଟକର ଥିଲେ ମଧ୍ୟ ବାକି ସବୁ ଖାଇବା ଘରକୁ ଯେ ଇଚ୍ଛା ସେ ଯାଇ ପାରୁଥିଲେ । ଦିନକୁ ଦୁଇଥର ଖାଇବାପାଇଁ ମାସିକ ମେସ ଖର୍ଚ୍ଚ ଥିଲା ୭ ଟଙ୍କା ୫୦ ପଇସା । ହଷ୍ଟେଲ ହତାଭିତରେ ଲାଇସେନସ୍ ପାଇଥିବା ଜଣେ ଦୋକାନୀଙ୍କର ମିଷ୍ଟାନ୍ନ ଦୋକାନ ଥିଲା । ମେସ୍‌ର ପ୍ରଧାନ ପୂଜାରୀ ନାରାୟଣ ଓ ମିଠେଇ ଦୋକାନୀ ବନମାଳୀଙ୍କୁ ଭୁଲିବାର ନୁହେଁ । ମିଲ୍ ଓ ଜଳଖିଆ ଖାଇବା ସମୟରେ ସବୁ ୱାର୍ଡ୍‌ରୁ ଓ ସବୁ ଖାଇବା ଘରୁ ସେମାନଙ୍କ ନାମ ଡକା ପଡୁଥିଲା ।

ହଷ୍ଟେଲ ସହବାସୀମାନଙ୍କ ମଧ୍ୟରୁ ଯେଉଁମାନେ ବିଭିନ୍ନ କ୍ଷେତ୍ରରେ ପରବର୍ତ୍ତୀ କାଳରେ ସୁନାମ ଅର୍ଜନ କରିଥିଲେ, ସେମାନେ ହେଲେ—ଏଲାହାବାଦର ବିଖ୍ୟାତ ରସାୟନ ଶାସ୍ତ୍ରବିତ୍ ଅଧ୍ୟାପକ ନୀଳରତନ ଧର, ପଦାର୍ଥ ବିଜ୍ଞାନରେ ବିଶେଷଜ୍ଞ ଅଧ୍ୟାପକ ମେଘନାଦ ସାହା, ବାଙ୍ଗାଲୋର ଇନଷ୍ଟିଚ୍ୟୁଟ୍ ଓ ଖଡ଼ଗପୁର ଆଇ. ଆଇ. ଟି.ର ଅଧ୍ୟକ୍ଷ ରସାୟନ ଶାସ୍ତ୍ରବିତ୍ ଅଧ୍ୟାପକ ଜ୍ଞାନଚନ୍ଦ୍ର ଘୋଷ, ଇଣ୍ଡିଆନ ଏଗ୍ରିକଲଚରାଲ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ୍‌ର ଅଧ୍ୟକ୍ଷ ଅନ୍ୟତମ ରସାୟନ ଶାସ୍ତ୍ରବିତ୍ ଡକ୍ଟର ଜ୍ଞାନେନ୍ଦ୍ରନାଥ ମୁଖାର୍ଜୀ, କଲିକତା ବିଶ୍ୱବିଦ୍ୟାଳୟର ଗଣିତ ଅଧ୍ୟାପକ ଡକ୍ଟର ନିଖିଳରଞ୍ଜନ ସେନ୍, ସ୍ୱାଧୀନତା ସଂଗ୍ରାମର ବିଖ୍ୟାତ ଯୋଦ୍ଧା ଶ୍ରୀ ଅନଙ୍ଗମୋହନ ଦାମ, ରାଜନୈତିକ ନେତା ଡକ୍ଟର ଏସ୍. ପି. ବୋଷ, ପାଟଣା କଲେଜର ପଦାର୍ଥବିଜ୍ଞାନ ଅଧ୍ୟାପକ ଶ୍ରୀ କାମତା ପ୍ରସାଦ, ଆସାମର ବିଖ୍ୟାତ ଐତିହାସିକ ଓ ଶିକ୍ଷାବିତ୍ ଡକ୍ଟର ସୂର୍ଯ୍ୟକୁମାର ଭୂୟାଁ, ସିଲହଟର ଶିକ୍ଷାବିତ୍ ଶ୍ରୀ ଶଶିଭୂଷଣ ଚକ୍ରବର୍ତ୍ତୀ ଏବଂ ଚିକିତ୍ସାବିତ୍ ଡକ୍ଟର ବିରଜାଶଙ୍କର ଗୁପ୍ତ । ଓଡ଼ିଶାରୁ ଯେଉଁମାନଙ୍କ ନାମ ଉଲ୍ଲେଖ କରିଛି, ସେମାନଙ୍କ ବ୍ୟତୀତ ଏହି କେତେଜଣଙ୍କର ନାମ ମୋର ମନେପଡୁଛି । ବାରିପଦା ହାଇସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଶ୍ରୀ ଦେବେନ୍ଦ୍ରନାଥ ବାନାର୍ଜୀଙ୍କର ନାମ ଉଲ୍ଲେଖଯୋଗ୍ୟ । ସେ ଇଡେନ୍ ହିନ୍ଦୁ ହଷ୍ଟେଲକୁ ତାଙ୍କର ବନ୍ଧୁମାନଙ୍କ ସନ୍ଧାନ ନେବାକୁ ବାରମ୍ବାର ଯାଉଥିଲେ । ପରବର୍ତ୍ତୀକାଳରେ ସେ ଆଇ. ଏ. ଏସ୍. ହୋଇ ଜଣେ ବିଖ୍ୟାତ ଶାସକ ଓ ଯୁନଅନ

ପବ୍ଲିକ୍ ସର୍ଭିସ୍ କମିଶନ୍‌ର ଚେୟାରମ୍ୟାନ୍ ହୋଇଥିଲେ । ଭାରତର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ଇଡେନ ହିନ୍ଦୁ ହଷ୍ଟେଲରେ ଛାତ୍ରଭାବରେ ରହୁଥିଲେ । କିନ୍ତୁ ମୁଁ ଗଲାବେଳକୁ ସେ ନ ଥିଲେ । ସେତେବେଳେ ସେ କଲିକତା ହାଇକୋର୍ଟରେ ଓକିଲାତି କରୁଥିଲେ । କିନ୍ତୁ ହଷ୍ଟେଲର ବାର୍ଷିକ ମିଳନ ଉତ୍ସବରେ ଜଣେ ପୂର୍ବତନ ଛାତ୍ର ଭାବରେ ସେ ବର୍ଷକରେ ଯୋଗ ଦେଉଥିଲେ ।

## ସରସ୍ୱତୀ ପୂଜା ପ୍ରତି ଅଶ୍ରଦ୍ଧା

ହଷ୍ଟେଲରେ ଜୀବନ ଅତ୍ୟନ୍ତ ବନ୍ଧୁତ୍ୱପୂର୍ଣ୍ଣ ଓ ସହଯୋଗମୂଳକ ଥିଲା । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ଓଡ଼ିଶା ଓ ଆସାମ ଅପେକ୍ଷା ବଙ୍ଗଳା ବହୁତ ଆଗରେ ଥିଲା । ସେ ଦୃଷ୍ଟିରୁ ବଙ୍ଗାଳୀମାନଙ୍କ ମଧ୍ୟରେ ଟିକିଏ ଦାମ୍ଭିକତା ଭାବ ପ୍ରକାଶ ପାଇବା ସ୍ୱାଭାବିକ ଥିଲା । କିନ୍ତୁ ହଷ୍ଟେଲରେ ତାହା ନ ଥିଲା । ବର୍ଷରେ ଦୁଇଟି ଦିନ ହଷ୍ଟେଲର ସବୁଛାତ୍ର ଏକାଠି ହେଉଥିଲେ । ତାହା ହେଉଛି ବାର୍ଷିକ ଉତ୍ସବ ଓ ସରସ୍ୱତୀ ପୂଜା । ବାର୍ଷିକ ଉତ୍ସବରେ ନାଟକ ଅଭିନୟ ହେଉଥିଲା ଓ ବାହାରୁ ପ୍ରତିଷ୍ଠାବାନ୍ ଲୋକେ ଆସି ଭାଷଣ ଦେଉଥିଲେ । ଏଠାରେ ମୁଁ କହିରଖେ ଯେ ଇଡେନ୍ ହିନ୍ଦୁ ହଷ୍ଟେଲରୁ ମୁଁ ସରସ୍ୱତୀ ପୂଜା ପାଳନ କରିବା ଛାଡ଼ିଦେଲି । ତାର କାରଣ ହେଉଛି କବି ରାଧାନାଥ ଗାଇଥିଲେ ଯେ ଦେବୀ ସରସ୍ୱତୀ ଓଡ଼ିଶାବାସୀଙ୍କ ପ୍ରତି ନିର୍ଦ୍ଦୟ ଥିଲେ—

ଦେବୀ ବୀଣାପାଣି କେଉଁ ପାପ ଫଳେ
କରୁଣା ତୋହର ଊଣା ଏ ଉତ୍କଳେ ।

ମୋର ଯୁକ୍ତି ହେଉଛି ଯୁଗ ଯୁଗ ଧରି ସରସ୍ୱତୀଙ୍କୁ ପୂଜା କରି କବିଙ୍କ ଭାଷାରେ ଯଦି ଏଇଆ ହେଲା ଆମର ଅବସ୍ଥା, ତା'ହେଲେ ଏ ପୂଜା କରି କି ଲାଭ ? ପରେ ଯେତେବେଳେ ମୁଁ ଜାଣିଲି ଯେ ସାହିତ୍ୟ ଦର୍ପଣକାର ବିଶ୍ୱନାଥ କବିରାଜ ଓ ଗୀତ ଗୋବିନ୍ଦର କବି ଜୟଦେବ ସଂସ୍କୃତ ସାହିତ୍ୟକୁ ଅମୂଲ୍ୟ ଦାନ କରି ଯାଇଛନ୍ତି । ମୁଁ ଅନୁଭବ କଲି, ପ୍ରକୃତରେ ସରସ୍ୱତୀଙ୍କର କରୁଣା ଉତ୍କଳ ପ୍ରତି ଊଣା ନୁହେଁ । କିନ୍ତୁ ମୁଁ ଯେଉଁ ସିଦ୍ଧାନ୍ତ ଗ୍ରହଣ କରିଥିଲି, ସେଥିରେ ଆଉ ପରିବର୍ତ୍ତନ ହେଲା ନାହିଁ ।

## ଓଡ଼ିଆଙ୍କ କର୍ତ୍ତବ୍ୟନିଷ୍ଠା

ମୁଁ ଆଗରୁ କହିଛି, ହଷ୍ଟେଲର ବାତାବରଣ ବନ୍ଧୁତ୍ୱପୂର୍ଣ୍ଣ ଥିଲା । କିନ୍ତୁ ହଷ୍ଟେଲ ବାହାରେ ଦାମ୍ଭିକତା ମନୋଭାବ ପ୍ରକାଶ ପାଉଥିଲା । ସେ ସମୟରେ 'ନାୟକ' ନାମରେ ଏକ ବଙ୍ଗଳା ଦୈନିକ ଥିଲା । ସେହି ପତ୍ରିକାଟିରେ ଥରେ

ଏକ ଗଳ୍ପ ପ୍ରକାଶ ପାଇଥିଲା । ଗଳ୍ପରେ ବର୍ଷା କରୁଛୁ, ନାତି ଅଜାକୁ ପଚାରୁଛି, 'ଅଜା' ସ୍ୱର୍ଗରେ କ'ଣ କେହି ଓଡ଼ିଆ ନାହାନ୍ତି ? ଅଜା ଏ ପ୍ରଶ୍ନ ପଚାରିବାର ଉଦ୍ଦେଶ୍ୟ କ'ଣ ବୋଲି ଜାଣିବାକୁ ଇଚ୍ଛା କରିବାରୁ ନାତି କହୁଚି "ସ୍ୱର୍ଗର ପାଣିପଯାକ କଣା ହୋଇଯାଇଥିବାରୁ ଏପରି ବର୍ଷା ହେଉଚି । ଓଡ଼ିଆ ଥିଲେ ସେମାନେ ମରାମତି କରି ସାରିଥାଆନ୍ତେ ।" ଏହି ଗଳ୍ପ ଓଡ଼ିଆମାନଙ୍କର ନିନ୍ଦା ବା ପ୍ରଶଂସା ଯେ କୌଣସି ଦୃଷ୍ଟିରୁ ଗ୍ରହଣ କରାଯାଇପାରେ । କଲିକତାରେ ଅଧିକାଂଶ ପାଣିବାଲା ଥିଲେ ଓଡ଼ିଆ । ଅନ୍ୟ ଏକ ଘଟଣାରେ "ନାୟକ" ଉତ୍କଳଗୌରବ ମଧୁସୂଦନଙ୍କୁ 'ମଧୁଉଡ଼େ' ନାମ ଦେଇଥିଲା ।

ଯାହାହେଉ, କାରିଗର ଭାବରେ ଓଡ଼ିଆମାନେ ଶିଳ୍ପ କୌଶଳ ଦେଖାଇ ଭାରତରେ ସର୍ବତ୍ର ସୁପରିଚିତ ହୋଇଥିଲେ । ମୁଁ ଆଗ୍ରା, ମଥୁରା ଓ ଭାରତର ଅନ୍ୟ ବହୁ ସ୍ଥାନରେ ଓଡ଼ିଆ ଦାରିଗରମାନଙ୍କୁ ଦେଖିଚି । ନିଷ୍ଠାପର ଭାବରେ କାମ କରି ଓଡ଼ିଆମାନେ ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜନ କରୁଥିଲେ । ଏପରିକି ଜଣେ ସାମାନ୍ୟ ଓଡ଼ିଆ ଚାକର କିପରି ତାର ନିଷ୍ଠା ଫଳରେ ତା'ର ଜନ୍ମଭୂମିର ସମ୍ମାନ ବଢାଇଥିଲା ସେ ସମ୍ପର୍କରେ ଏକ କାହାଣୀ ମୁଁ ଏଠାରେ ଉଲ୍ଲେଖ କରିପାରେ । ମୁଁ କାମ୍ବ୍ରିଜରେ ଥିବାବେଳେ ଦିନେ ସେଠାରେ ଏକ ପ୍ରଧାନ ରାସ୍ତାରେ ବୁଲି ବାହାରିଚି, ଜଣେ ବୟସ୍କ ଇଂରେଜ ଭଦ୍ର-ଲୋକ ମୋତେ ଅଟକାଇ ପଚାରିଲେ, "ଆପଣ କେଉଁଠୁ ଆସିଛନ୍ତି ?" ମୁଁ କହିଲି, "ଓଡ଼ିଶାରୁ ।" ସେ ଭାରି ଖୁସିହୋଇ ମୋର କରମର୍ଦ୍ଦନ କରି କହିଲେ, "ମୁଁ ଆଜି କେଡ଼େ ଆନନ୍ଦିତ ଯେ ମୋର ପୁରାତନ ବେହେରା ସପନର ଦେଶରୁ ଜଣେ ଯୁବକ ସଙ୍ଗେ ଦେଖା ହେଲା । ସପନ ମୋର ବିଶ୍ୱସ୍ତ ବେହେରା ଥିଲା ଏବଂ ମୋର ପିଲାଙ୍କୁ ବଡ଼ ହେପାଜତ କରୁଥିଲା । ତାଙ୍କ ଘରେ ଚା ଖାଇବାପାଇଁ ସେ ମୋତେ ନିମନ୍ତ୍ରଣ କଲେ । ମୁଁ ଜାଣିଲି ସେ ଜଣେ ଅବସରପ୍ରାପ୍ତ ଆଇ. ସି. ଏସ୍. ଅଫିସର । ଏବେ କାମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଅଛନ୍ତି । ମୁଁ ତାଙ୍କର ନାମ ଓ ସପନର ଗାଁ ନାଁ ମଧ୍ୟ ଭୁଲିଯାଇଚି । କିନ୍ତୁ ଏହି ଘଟଣାର ଶିକ୍ଷାହେଉଚି ଲୋକ ଯେ କୌଣସି କାର୍ଯ୍ୟରେ ଥାଉନା କାହିଁକି କର୍ତ୍ତବ୍ୟନିଷ୍ଠାଦ୍ୱାରା ସେ ତାର ମାତୃଭୂମିର ସୁନାମ ବଢ଼ାଇପାରେ ।



# କଲିକତାରେ କଲେଜ ଜୀବନ

ବର୍ତ୍ତମାନ ପୁଣି କଲିକତା କଥା କହିବ । ଇଡେନ୍ ହିନ୍ଦୁ ହଷ୍ଟେଲ୍‌ରେ କେବଳ ଯେ ବହୁ ସଂଖ୍ୟକ ଓଡ଼ିଆ ଛାତ୍ର ରହୁଥିଲେ ତାହା ନୁହେଁ, ୯ ନମ୍ବର ପଞ୍ଚାନନ ଘୋଷ ଲେନ୍‌ରେ ମଧ୍ୟ ଓଡ଼ିଶାର ବହୁ ସ୍ନାତକୋତ୍ତର ଛାତ୍ର ରହୁଥିଲେ । ସେଠାରେ ରହୁଥିବା କେତେକ ବିଖ୍ୟାତ ଲୋକଙ୍କର ନାମ ମୋର ମନେପଡ଼ୁଛି । ସେମାନଙ୍କ ମଧ୍ୟରୁ କବି ପଦ୍ମଚରଣ ପଟ୍ଟନାୟକ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ ଓ ଅଧ୍ୟାପକ କୃତ୍ତିବାସ ସାମନ୍ତରାୟଙ୍କର ନାମ ଉଲ୍ଲେଖଯୋଗ୍ୟ ।

## ଅଙ୍କ-ଶାସ୍ତ୍ର ଅଧ୍ୟୟନ

ବର୍ତ୍ତମାନ ଆମ କଲେଜ ବିଷୟରେ କିଛି କହିବା ଆବଶ୍ୟକବୋଲି ମନେକରୁଛି । ମୁଁ ମୋର ବି. ଏସ୍‌ସି. ପାଠ୍ୟକ୍ରମରେ ପଦାର୍ଥବିଜ୍ଞାନ, ରସାୟନଶାସ୍ତ୍ର ଓ ଅଙ୍କଶାସ୍ତ୍ର ନେଇଥିଲି । ମୋର ଉଦ୍ଭିଦବିଜ୍ଞାନ ନେବାପାଇଁ ଖୁବ୍ ଇଚ୍ଛା ଥିଲା, ମଧ୍ୟ ସେ କାଳରେ କଲିକତା ବିଶ୍ୱବିଦ୍ୟାଳୟରେ କିମ୍ବା ପ୍ରେସିଡେନ୍‌ସି କଲେଜରେ ଉଦ୍ଭିଦ-ବିଜ୍ଞାନ ଶ୍ରେଣୀ ନ ଥିଲା । ଯଦି କେହି ଉଦ୍ଭିଦବିଜ୍ଞାନ ଅଧ୍ୟୟନ କରିବାକୁ ଚାହୁଁଥିଲା, ତା'ହେଲେ ବଙ୍ଗବାସୀ କଲେଜରେ ଥିବା ଏହି ଶ୍ରେଣୀମାନଙ୍କରେ ଯୋଗଦେବା ଦରକାର ପଡ଼ୁଥିଲା । ଆର୍ଥିକ କାରଣରୁ ମୋ ପକ୍ଷରେ ଏହା ସମ୍ଭବପର ନ ଥିଲା । ଚାକିରିବାକିରିର ସୁବିଧା ଦୃଷ୍ଟିରୁ ମୁଁ ଅଙ୍କଶାସ୍ତ୍ରକୁ ବାଛିନେଇ ସେଥିରେ ଅନର୍ସ ନେଲି । ସେ ସମୟରେ ପଦାର୍ଥ-ବିଜ୍ଞାନ ଓ ପ୍ରାଣୀ-ବିଜ୍ଞାନ ଏତେ ବିସ୍ତୃତ ଭାବରେ ପଢାଯାଉ ନ ଥିଲା । ଜଣଙ୍କର ଅଙ୍କଶାସ୍ତ୍ରରେ ଜ୍ଞାନ ଥିଲେ ସେ ଅନ୍ତତଃ ଜଣେ ସ୍କୁଲ ଶିକ୍ଷକ ହୋଇପାରୁଥିଲା । ଅନର୍ସ ଶ୍ରେଣୀରେ ମୋ ସାଙ୍ଗରେ ଯେଉଁମାନେ ପଢୁଥିଲେ ସେମାନଙ୍କମଧ୍ୟରୁ କେତେଜଣ ହେଲେ—ଅଧ୍ୟାପକ ଶ୍ରୀ ସତ୍ୟେନ୍ଦ୍ର ନାଥ ଘୋଷ ଏବଂ ବିଖ୍ୟାତ ପଦାର୍ଥ-ବିଜ୍ଞାନବିତ୍ ଡକ୍ଟର ମେଘନାଦ ସାହା, କଲିକତା ବିଶ୍ୱବିଦ୍ୟାଳୟର ଅଙ୍କଶାସ୍ତ୍ର ଅଧ୍ୟାପକ ନିଖିଳରଞ୍ଜନ ସେନ୍, ବିହାରର ଜାକିରହୋସେନ୍ ହୁସେନ୍ ଯେକି ଆଇ.ସି. ଏସ୍. ହୋଇ ରିଜର୍ଭ ବ୍ୟାଙ୍କର ଡେପୁଟି ଗଭର୍ଣ୍ଣର ହୋଇଥିଲେ । ଆମର ଅଧ୍ୟାପକଗଣ ହେଉଛନ୍ତି, ଡକ୍ଟର କଲିସ୍, ଡକ୍ଟର ଡି. ଏନ୍. ମଲ୍ଲିକ, ଶ୍ରୀ ବଙ୍କିମ ଦାସ ବାନାର୍ଜୀ ଏବଂ ଶ୍ରୀ ଏଚ୍. ସି. ସେନ୍‌ଗୁପ୍ତ ।

## ବାଇଜୀ ଓ ସୁଧାଂଶୁବଦନ

ଡକ୍ଟର କଲିସ୍ ଜଣେ ଗମ୍ଭୀର ଓ ନିଷ୍ଠାପର ଶିକ୍ଷକ ଥିଲେ, ଯେ କି ନିଜ ବିଷୟରୁ ବାହାରକୁ ଯାଉ ନ ଥିଲେ । କିନ୍ତୁ ଡକ୍ଟର ଡି. ଏନ୍. ମଲ୍ଲିକ ଅନ୍ୟ ଧରଣର ଥିଲେ । ତାଙ୍କର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଆବରଣ ତଳେ ଏକ ରସିକତାପୂର୍ଣ୍ଣ ମନୋଭାବ ଲୁକ୍କାୟିତ ଥିଲା । ଆମର ଜଣେ ସହପାଠୀର ନାମ ଥିଲା, ସୁଧାଂଶୁବଦନ । କିନ୍ତୁ ତା'ର ଚେହେରା ନାମର ଯଥାର୍ଥତା ପ୍ରତିପାଦନ କରୁ ନ ଥିଲା । ଦିନେ ଉପସ୍ଥାନ ଗ୍ରହଣ ସମୟରେ ଡକ୍ଟର୍ ମଲ୍ଲିକ ତା'ର ନାମକୁ ଡାକିଦେଇ ସଙ୍ଗେ ସଙ୍ଗେ ମନ୍ତବ୍ୟ କଲେ, ବାପା ମା'ମାନେ ତାଙ୍କ ପିଲାମାନଙ୍କ ବିଷୟରେ ଖୁବ୍ ଅତିରଞ୍ଜିତ ମନୋଭାବ ପୋଷଣ କରନ୍ତି । ବେଳେ ବେଳେ ବ୍ଲାକ ବୋର୍ଡରେ ଇଂରେଜୀରେ "By G" ଲେଖିଲାବେଳେ ସେ ଏପରି ଉଚ୍ଚାରଣ କରନ୍ତି ଯେ ତାହା "ବାଇଜୀ" ବୋଲି ଶୁଣାଯାଏ । ଆମର ସବୁ ଶିକ୍ଷକଙ୍କୁ ଆମେ ଯଥେଷ୍ଟ ଶ୍ରଦ୍ଧା କରୁଥିଲୁ ଓ ସମ୍ମାନ ଦେଉଥିଲୁ । ଅଧ୍ୟାପକ ସେନ୍‌ଗୁପ୍ତଙ୍କର ଡାକନାମ ଥିଲା "ମେଗା" । କାରଣ ଏହି ଶବ୍ଦଟିକୁ ସେ ଏକ ବିଚିତ୍ର ଭଙ୍ଗୀରେ ଉଚ୍ଚାରଣ କରୁଥିଲେ । ପାଶ୍ ପାଠ୍ୟରେ ମୋର ପଦାର୍ଥବିଜ୍ଞାନ ଓ ରସାୟନଶାସ୍ତ୍ର ଥିଲା । ପଦାର୍ଥବିଜ୍ଞାନରେ ଆମର ଶିକ୍ଷକମାନେ ଥିଲେ ଅଧ୍ୟାପକ ପିକ୍, ଅଧ୍ୟାପକ ହେଣରସନ୍ ଏବଂ ଆଚାର୍ଯ୍ୟ ଜଗଦୀଶ ଚନ୍ଦ୍ର ବୋଷ । ଏ ସମସ୍ତଙ୍କ ମଧ୍ୟରେ ଆଚାର୍ଯ୍ୟ ଜଗଦୀଶଙ୍କର ପ୍ରଭାବ ଛାତ୍ରମାନଙ୍କ ଉପରେ ସବୁଠାରୁ ବେଶି ପଡୁଥିଲା । ସେ ଘଣ୍ଟା କଣ୍ଟାପରି ନିୟମିତ ଥିଲେ । ଡିମନ୍‌ଷ୍ଟ୍ରେଟର ଉପସ୍ଥାନ ପକାଉଥିଲେ । ଆଚାର୍ଯ୍ୟ ଜଗଦୀଶ ଲେକ୍‌ଚର ଥିଏଟର୍‌ରେ ସିଧା ପ୍ରବେଶ କରି ଭାଷଣ ଆରମ୍ଭ କରୁଥିଲେ ଏବଂ ଠିକ୍ ସମୟରେ ଭାଷଣ ଶେଷ କରି ଯାଉଥିଲେ । ଡିମନ୍‌ଷ୍ଟ୍ରେଟର ପୂର୍ବରୁ ଡିମନ୍‌ଷ୍ଟ୍ରେସନ ପାଇଁ ସମସ୍ତ ପରୀକ୍ଷଣ ସଜ୍ଜା ପ୍ରସ୍ତୁତ କରି ରଖୁଥିଲେ ।

## ଆଚାର୍ଯ୍ୟ ଜଗଦୀଶ ଓ ପ୍ରଫୁଲ୍ଲଚନ୍ଦ୍ର

ରସାୟନଶାସ୍ତ୍ରରେ ଆମର ଅଧ୍ୟାପକ ଥିଲେ ଡକ୍ଟର ପି. ସି. ରାୟ (ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର), ଅଧ୍ୟାପକ ଚନ୍ଦ୍ରଭୂଷଣ ଭାଦୁଡ଼ି ଓ ଅଧ୍ୟାପକ ଜ୍ୟୋତିଭୂଷଣ ଭାଦୁଡ଼ି । ଏମାନେ ମିଶି ବେଙ୍ଗଲ କେମିକାଲ୍ କାରଖାନାର ସ୍ଥାପନ ଓ ଉନ୍ନତି ସାଧନ କରିଥିଲେ । ସେମାନେ ଆଦର୍ଶ ସ୍ଥାନୀୟ ଶିକ୍ଷକ ଥିଲେ । ଆଚାର୍ଯ୍ୟ ଜଗଦୀଶ ଚନ୍ଦ୍ରଙ୍କଠାରୁ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ଥିଲେ ଭିନ୍ନ ଧରଣର ଶିକ୍ଷକ । ଆଚାର୍ଯ୍ୟ ଜଗଦୀଶ ତାଙ୍କ ବକ୍ତବ୍ୟ ବିଷୟରୁ ଟିକିଏ ହେଲେ ଏପାଖ ସେପାଖ ହେଉ ନ ଥିଲେ । କିନ୍ତୁ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ଛାତ୍ରମାନଙ୍କ ମଧ୍ୟରେ ବୈଜ୍ଞାନିକ ଦୃଷ୍ଟିକୋଣର ବିକାଶ ପାଇଁ ଭାରତୀୟ ସଂସ୍କୃତିରୁ

ବହୁ ବୌଦ୍ଧିକ ଓ ସାମାଜିକ ବିଷୟବସ୍ତୁର ଅବତାରଣା କରୁଥିଲେ । ମୋର ଗୋଟିଏ ଘଟଣା ମନେପଡୁଛି । ମଧ୍ୟଯୁଗୀୟ ଭାରତ ବର୍ଷରେ ତର୍କ ଉପରେ କପରି ଅନାବଶ୍ୟକ ଗୁରୁତ୍ୱ ଦିଆଯାଇ ବିଜ୍ଞାନର କ୍ଷତି ସାଧନ କରାଯାଉଥିଲା, ତାର ଏକ ସୁନ୍ଦର ଉଦାହରଣ ସେ ଦେଉଥିଲେ । ସେ କହୁଥିଲେ, ଏହିପରି ଯୁକ୍ତି କରି ଆମର ସମୟ ଓ ଶକ୍ତିର ଅପଚୟ ଘଟେ । ଯଥା—

"ତାଲ୍ ପଡ଼୍ୟା ଟିପ୍ କରେ, ନା ଟିପ୍ କରିୟା ତାଲ୍ ପଡେ" ଅର୍ଥାତ୍ ତାଳ ପଡ଼ିଲେ ଟୋ କରି ଶବ୍ଦ ହୁଏ ନା ଟୋ କରି ଶବ୍ଦ ହେଲେ ତାଳ ପଡେ । ଏହି ସବୁ ଶ୍ରେଷ୍ଠ ଶ୍ରେଷ୍ଠ ଉଦାହରଣଦ୍ୱାରା ତାଙ୍କର ବକ୍ତୃତାମାନ ଭାରି ସରସ ହେଉଥିଲା ।

ବିଭିନ୍ନ ରସାୟନିକ ଦ୍ରବ୍ୟର ଉତ୍ପାଦନ ବିଷୟରେ ଚନ୍ଦ୍ରଭୂଷଣ ବାବୁ ଖୁବ୍ ପୁଙ୍ଖାନୁପୁଙ୍ଖ ଭାବରେ ବୁଝାଉଥିଲେ । ବେଙ୍ଗଲ୍ କେମିକାଲ ସମ୍ପର୍କରେ ଆସି ସେ ଗଭୀର ଜ୍ଞାନ ଓ ଅଭିଜ୍ଞତା ଆହରଣ କରିପାରିଥିଲେ । ଏହିପରି ବାତାବରଣରେ ଆମେ ଆମର ବି. ଏସ୍‌ସି. ପାଠ୍ୟକ୍ରମ ଶେଷକରି ୧୯୧୨ ମସିହାରେ ପରୀକ୍ଷା ଦେଲୁ ।

## ବିହାର ଓ ଓଡ଼ିଶା

ଏହି କାଳର ଏକ ବିଶିଷ୍ଟ ରାଜନୈତିକ ଘଟଣା ହେଉଛି, ବଙ୍ଗ ଭଙ୍ଗ ସିଦ୍ଧାନ୍ତ ରଦ୍ଦ ହେବା ଏବଂ ବିହାର ଓଡ଼ିଶା ଓ ଆସାମ ପ୍ରଦେଶର ସୃଷ୍ଟି ହେବା । ମୋର ମନେ ଅଛି ସୁରେନ୍ଦ୍ରନାଥ ବାନାର୍ଜି କଲେଜ କ୍ୱାଡ୍ରାଙ୍ଗଲ୍‌ରେ ଏକ ଭାଷଣ ଦେଇଥିଲେ । ତାଙ୍କ ଭାଷଣ ଆରମ୍ଭରେ ଗୁରୁଗମ୍ଭୀର ସ୍ୱରରେ ସେ ଯେଉଁ ପ୍ରଥମ ବାକ୍ୟଟି କହିଥିଲେ ତାହା ହେଉଛି, "ବଙ୍ଗ ଭଙ୍ଗ ରଦ୍ଦ ହୋଇଛି ।" ତେଣୁ ହିନ୍ଦୁ ହଷ୍ଟେଲ ସମେତ ଚାରିଆଡ଼େ ଆନନ୍ଦ ଉଲ୍ଲାସ ଖେଳିଗଲା । କାରଣ ବଙ୍ଗଦେଶ ପକ୍ଷରେ ଏହା ଥିଲା ଏକ ପ୍ରଧାନ ରାଜନୈତିକ ଘଟଣା । କିନ୍ତୁ ସେତେବେଳେ କେହି ଧାରଣା କରି ନ ଥିଲେ ଯେ, ଯେଉଁ ଦେଶ-ବିଭାଗର ମଞ୍ଜି ପୋତା ହେଲା, ତାହା ପରବର୍ତ୍ତୀ କାଳରେ ଭାରତ-ବର୍ଷକୁ ବିଖଣ୍ଡିତ କରିବ । ବିହାରୀ ଓ ଓଡ଼ିଆମାନଙ୍କ ପାଇଁ ବିହାର ଓ ଓଡ଼ିଶା ପ୍ରଦେଶର ସୃଷ୍ଟି ତାତ୍ପର୍ଯ୍ୟପୂର୍ଣ୍ଣ । ଆମର କେତେ ଜଣ ବଙ୍ଗାଳୀ ସହପାଠୀ ଆମପ୍ରତି ସହାନୁଭୂତିଶୀଳ ହୋଇ ଦେଖାଇଥିଲେ । ଜଣେ ବନ୍ଧୁଙ୍କର ମନ୍ତବ୍ୟ ମୋର ମନେଅଛି— "ଓଡ଼ିଶା କି ଦୋଷ କରିଥିଲା ଯେ ତାକୁ ଏପରି ଦଣ୍ଡିତ କରାଗଲା ।" ଯାହାହେଉ ଆମେ ଏହି ନୂଆ ପ୍ରଦେଶ ସୃଷ୍ଟିରେ ଆଶାବାନ୍ ହୋଇଥିଲୁ ।

ଓ୍ୱାଇ. ଏମ୍. ସି. ଏ. ହଲ୍‌ରେ ସାଧାରଣ ସଭା ଓ ବକ୍ତୃତାମାନଙ୍କରେ ଯୋଗଦେବା ମୋର ଏକ ଅଭ୍ୟାସ ଥିଲା । ଆଉ ମଧ୍ୟ କଲେଜ ସ୍କୋୟାର୍‌ରେ ସଭା ହେଲେ ଯାଉଥିଲି । ଥରେ ଗୋପାଳକୃଷ୍ଣ ଗୋଖଲେଙ୍କ ଭାଷଣ ଶୁଣିବା ପାଇଁ ମୁଁ କଲେଜ ସ୍କୋୟାର୍‌କୁ ଯାଇଥିଲି । ସୁରେନ୍ଦ୍ରନାଥ ବାନାର୍ଜୀଙ୍କଠାରୁ ତାଙ୍କର ବକ୍ତୃତା ଭିନ୍ନ ଧରଣର ଥିଲା । ସେ ଧୀର ସ୍ୱରରେ କହୁଥିଲେ ଏବଂ ସମସ୍ତ କଥା ଯୁକ୍ତିଦ୍ୱାରା ପ୍ରତିପାଦିତ କରିବାପାଇଁ ଚେଷ୍ଟା କରୁଥିଲେ । ସୁରେନ୍ଦ୍ରନାଥ ନିଜର ଗୁରୁଗମ୍ଭୀର ସ୍ୱରରେ ଶ୍ରୋତାବର୍ଗଙ୍କୁ ଯନ୍ତ୍ରବତ୍ ସ୍ତମ୍ଭିତ କରି ରଖୁଥିଲେ ।

୧୯୧୩ ମସିହାରେ ମୁଁ ବି. ଏସ୍‌ସି. ଅନର୍ସ ପରୀକ୍ଷା ଦେଇ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲି ଏବଂ ସେହିବର୍ଷ ଏମ୍. ଏସ୍‌ସି. ଶ୍ରେଣୀରେ ଯୋଗ ଦେଲି । ସେ କାଳରେ କଟକରେ ଓଡ଼ିଆ ପିପୁଲ୍‌ସ ଆସୋସିଏସନ୍ ନାମରେ ଏକ ସଂସ୍ଥା ଥିଲା । ସାହିତ୍ୟିକ ଓ ଆଇନଜୀବୀ ରାୟବାହାଦୁର ଭିକାରିଚରଣ ପଟ୍ଟନାୟକ ଏହାର ସେକ୍ରେଟାରୀ ଥିଲେ । ଏହି ଆସୋସିଏସନ୍ ଜରିଆରେ ସ୍ନାତକୋତ୍ତର ବୃତ୍ତି ପାଇଁ ମୁଁ ବିହାର ଓଡ଼ିଶା ସରକାରଙ୍କୁ ଦରଖାସ୍ତ କଲି ଏବଂ ମାସିକ ୨୦ ଟଙ୍କାର ବୃତ୍ତି ଲାଭକଲି ।

## ମାନମନ୍ଦିରରେ ସହକାରୀ

ପ୍ରେସିଡେନ୍‌ସି କଲେଜର ଗୋଟିଏ ମାନମନ୍ଦିର ଥିଲା । ଅଙ୍କଶାସ୍ତ୍ର ଅଧ୍ୟାପକ ଏହି ମାନମନ୍ଦିରର ଦାୟିତ୍ୱରେ ଥିଲେ । ମାନମନ୍ଦିରରେ ପୂରା ସମୟ ପାଇଁ ଜଣେ କର୍ମଚାରୀ ନିଯୁକ୍ତ ହୋଇଥାନ୍ତି ଏବଂ ସ୍ନାତକୋତ୍ତର ଅଙ୍କଶାସ୍ତ୍ର ଶ୍ରେଣୀରୁ ଦୁଇଜଣ ଛାତ୍ର ସହକାରୀରୂପେ ବଛାଯାଉଥିଲେ । ମୁଁ ଯେତେବେଳେ ସ୍ନାତକୋତ୍ତର ଶ୍ରେଣୀରେ ଯୋଗଦେଲି ସେତେବେଳେ ଜଣେ ଛାତ୍ର-ସହକାରୀ ଦରକାର ହୋଇଥିଲେ । ମୁଁ ଆମର ଅଧ୍ୟାପକ ଡକ୍ଟର କଲିସନ୍ ପାଖକୁ ଯାଇ ଏଥିପାଇଁ ଆବେଦନ କଲି ଏବଂ ସେ ମୋତେ ବାଛିନେଲେ । ଏଥିପାଇଁ ମାସିକ ଦକ୍ଷିଣା ମିଳେ ୨୦ ଟଙ୍କା । କାମ କରିବାର ସମୟ ହେଉଛି ସନ୍ଧ୍ୟା ୭ଟାରୁ ୯ଟା ଏବଂ ସପ୍ତାହରେ ରବିବାର ଛାଡ଼ିଦେଇ ଛଅଦିନ । ଛାତ୍ର ଏବଂ ସାଧାରଣ ଲୋକେ ଏହି ମାନମନ୍ଦିରକୁ ନକ୍ଷତ୍ର ଓ ଅନ୍ୟାନ୍ୟ ଜ୍ୟୋତିଷମାନଙ୍କୁ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିବାପାଇଁ ଆସନ୍ତି । ଛାତ୍ର ସହକାରୀମାନଙ୍କର କର୍ତ୍ତବ୍ୟ ହେଉଛି ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ସେମାନଙ୍କୁ ଦେଖାଇବାରେ ସାହାଯ୍ୟ-କରିବା ଏବଂ ରଖାଯାଇଥିବା ଅନ୍ୟାନ୍ୟ ଯନ୍ତ୍ରମାନଙ୍କ ସମ୍ପର୍କରେ ବୁଝାଇବା । ଶ୍ରୀ ବିଭୂତି

ଭୂଷଣ ଦତ୍ତ ମୋର ଅନ୍ୟତମ ସହକାରୀ ଥିଲେ ଏବଂ ସେ ଅଙ୍କଶାସ୍ତ୍ରରେ ଏମ୍. ଏସ୍‌ସି. ଶେଷ ବର୍ଷରେ ଅଧ୍ୟୟନ କରୁଥିଲେ । ତାଙ୍କ ଘର ଚଟ୍ଟଗ୍ରାମରେ ଓ ତାଙ୍କର ବଡ଼ ଭାଇ ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ଥିଲେ । ତାଙ୍କର ଜଣେ ସାନ ଭାଇ ଆଇ. ସି. ଏସ୍. ହୋଇଥିଲେ ଏବଂ ପରେ କୌଣସି ୟୁରୋପୀୟ ଦେଶରେ ଭାରତର ରାଷ୍ଟ୍ରଦୂତରୂପେ ନିଯୁକ୍ତ ପାଇଥିଲେ । ବିଭୂତି ବାବୁ ଜଣେ ସରଳ ବନ୍ଧୁଭାବାପନ୍ନ ଲୋକ ଥିଲେ । ଆମେ ଦୁଇଜଣ ଖୁବ୍ ବନ୍ଧୁ ହୋଇଗଲୁ । ସେ ଏମ୍ ଏସ୍‌ସି. ପାଶ୍ କରି କଲିକତା ବିଶ୍ବ-ବିଦ୍ୟାଳୟରେ ଅଙ୍କଶାସ୍ତ୍ରରେ ଜଣେ ଅଧ୍ୟାପକ ରୂପେ ନିଯୁକ୍ତ ହେଲେ । ପରେ ମୁଁ କେମ୍ବ୍ରିଜ୍‌ରେ ଥିଲାବେଳେ ଶୁଣିଲି ଯେ ସେ ସନ୍ନ୍ୟାସୀ ହୋଇଯାଇଥିଲେ ଏବଂ ପୁଷ୍କର ହ୍ରଦ (ଆଜମୀର ନିକଟବର୍ତ୍ତୀ) ନିକଟରେ ତୀର୍ଥବାସ କରୁଥିଲେ । ୧୯୬୧ ମସିହାରେ ମୁଁ ଯେତେବେଳେ ଭାରତକୁ ଫେରିଆସି କୌଣସି ଏକ କାର୍ଯ୍ୟରେ ଲକ୍ଷ୍ନୌ ଯାଇଥିଲି ଅପ୍ରତ୍ୟାଶିତ ଭାବରେ ସେଠାରେ ବିଭୂତିବାବୁଙ୍କ ସହିତ ମୋର ଦେଖାହେଲା । ତାଙ୍କର ଜଣେ ଅନୁରକ୍ତ ଛାତ୍ର ଲକ୍ଷ୍ନୌ ବିଶ୍ବବିଦ୍ୟାଳୟରେ ଅଧ୍ୟାପକ ଶ୍ରୀ ତ୍ରିପାଠୀଙ୍କ ନିମନ୍ତ୍ରଣ କ୍ରମେ ସେ ଲକ୍ଷ୍ନୌ ଆସିଥିଲେ । ଜଣେ ପୁରାତନ ବନ୍ଧୁଙ୍କ ସହିତ ଏତେଦିନ ପରେ ସାକ୍ଷାତ ହେବାର ଆନନ୍ଦ କୁହାଯାଇପାରିବ ନାହିଁ । ପ୍ରେସିଡେନ୍‌ସି କଲେଜର ପୁରୁଣା ଦିନଗୁଡ଼ିକ ସମ୍ପର୍କରେ ଆମେ ବହୁତ ସମୟ କଥାବାର୍ତ୍ତା ହେଲୁ ଏବଂ ମୁଁ ତାଙ୍କୁ ଆର୍ଥିକ ଦିଗରୁ ବା ଅନ୍ୟ କୌଣସି ଦିଗରୁ କିପରି ସାହାଯ୍ୟ କରିପାରେ ବୋଲି ପଚାରିଲି । ସେ ଜଣେ ସଚ୍ଚା ସନ୍ନ୍ୟାସୀ ଥିଲେ । ତେଣୁ କୌଣସି ସାହାଯ୍ୟ ଗ୍ରହଣ କରିବା ପାଇଁ ସେ ମନା କରିଦେଲେ । ତାଙ୍କ ସହିତ ଆଉ ମୋର ସାକ୍ଷାତ ହୋଇ ନାହିଁ । ସେ ଅଛନ୍ତି କି ମଲେଣି ମୁଁ କହିପାରିବି ନାହିଁ ।

ବର୍ତ୍ତମାନ ପାର୍ଥିବ ବିଷୟର ଆଲୋଚନା କରୁଛି । ସରକାରୀ ବୃତ୍ତି ଏବଂ ପ୍ରେସିଡେନ୍‌ସି କଲେଜ ମାନମନ୍ଦିରରେ ସହକାରୀ ଭାବରେ ମୋର ଉପ୍ରମିଶି ମାସକୁ ୪୦ ଟଙ୍କା ହେଉଥିଲା । ତେଣୁ ଶ୍ରୀ କାନୁନ୍‌ଗୋ ଓ ଶ୍ରୀ ଧରଙ୍କ ଠାରୁ ମୁଁ ଯେଉଁ ସାହାଯ୍ୟ ନେଉଥିଲି ତାହା ଆଉ ନେଲି ନାହିଁ ।

## ଗିରିଙ୍କ ଏଣ୍ଡ୍ରି ଗ୍ରହଦର

ଇଡେନ୍ ହିନ୍ଦୁ ହଷ୍ଟେଲରେ ରମେଶଚନ୍ଦ୍ର ପ୍ରଧାନ ନାମରେ ଓଡ଼ିଶାରୁ ନୂଆ ହୋଇ ଆସି ଜଣେ ଛାତ୍ର ରହୁଥିଲେ । ଅଙ୍କ ବିଷୟରେ ତାଙ୍କର ସାହାଯ୍ୟ ଦରକାର ହେଲା । ମାସିକ ୨୦ ଟଙ୍କାରେ ମୁଁ ସେ ଦାୟିତ୍ବ ଗ୍ରହଣକଲି । ଏହିପରି ଭାବରେ

ଟିଉସନ୍‌ଟି ସୂତ୍ରରୁ ମାସକୁ ୭୦ ଟଙ୍କା ପାଇ ମୁଁ ବେଶ୍ ଭଲଭାବରେ ରହିଲି ଏବଂ ସ୍କୁଲ୍‌ରେ ପଢ଼ୁଥିବା ମୋର ଜଣେ ଅଭାବଗ୍ରସ୍ତ ଦାଦପୁଅ ଭାଇଙ୍କୁ କିଛି ସାହାଯ୍ୟ କରିପାରିଲି । ହିନ୍ଦୁ ହଷ୍ଟେଲର ଆଉ ଏକ ଘଟଣା ମୁଁ ଏଠାରେ ଉଲ୍ଲେଖ କରିବାକୁ ଚାହେଁ । ମୁଁ ପୂର୍ବରୁ କହିଛି ଯେ, ବାଲେଶ୍ୱରର ଦେବେନ୍ଦ୍ରନାଥ ଗିରି ନାମରେ ଆମର ଜଣେ ସମସାମୟିକ ଛାତ୍ର ଥିଲେ । ସେ ଦେଖିଲେ ମୋର କୌଣସି ପଶମ, ରେଶମ ବା ଏଣ୍ଡିର ଗରମ ଚାଦର ନ ଥିଲା । ମୋଟା ସୂତା ଚାଦରରେ ଚଳିଯାଉଥିଲି ଏବଂ କିଛି ଗରମଲୁଗା ଦରକାର ହେଉ ନ ଥିଲା । ଦିନେ କଲେଜରୁ ଫେରିବାବେଳେ ଦେବେନ୍ଦ୍ରବାବୁ ଗୋଟିଏ ସାହି ଖଣ୍ଡେ ଏଣ୍ଡି ଚାଦର ମୋ ଖଟଉପରେ ରଖିଦେଇ-ଯାଇଛନ୍ତି । ମୁଁ ଚାଦରଟି ନେଇ ତାଙ୍କପାଖକୁ ଗଲି ଏବଂ ଫେରାଇନେବାପାଇଁ କହିଲି । କିନ୍ତୁ ସେ ଏତେ ଜିଦ୍ କଲେ ଯେ ବାଧ୍ୟ ହୋଇ ଧନ୍ୟବାଦ ସହିତ ତାହା ଗ୍ରହଣକଲି । ପୂର୍ବରୁ କୁହାଯାଇଛି ଦେବେନ୍ଦ୍ର ବାବୁ ଜଣେ ଆଇନଜୀବୀ ହୋଇଥିଲେ ଏବଂ ଭାରତୀୟ ବୈଦିକ ଋଷିଙ୍କମାନଙ୍କ ସମ୍ପର୍କରେ ଖୁବ୍ ଆଗ୍ରହୀ ଥିଲେ ।

ଏମ୍. ଏସ୍‌ସି. ପଢ଼ୁଥିବାବେଳେ ଗୋପବାବୁ (ଗୋପବନ୍ଧୁ ଚୌଧୁରୀ)ଙ୍କ ସହିତ ମୋର ବନ୍ଧୁତା ଜନ୍ମିଥିଲା । ସେ ଅଙ୍କଶାସ୍ତ୍ର ପଢ଼ୁଥିଲେ ଓ ମୋ'ଠାରୁ ବର୍ଷେ ଉପରେ ଥିଲେ । ବେଳେ ବେଳେ ମୁଁ ତାଙ୍କଠାରୁ ବହିପତ୍ର ମାଗି ଆଣୁଥିଲି ଏବଂ ପାଠ୍ୟ-ବିଷୟରେ ତାଙ୍କ ସାହାଯ୍ୟ ନେଉଥିଲି । ସେହିପରି ହରିହର ବାବୁ (ହରିହର ଦାସ) ଏବଂ ମୁଁ ଏକତ୍ର ଅଙ୍କଶାସ୍ତ୍ର ଅଧ୍ୟୟନକରୁଥିଲୁ । ସେ ମଧ୍ୟ ମୋ'ଠାରୁ ବର୍ଷେ ଉପର-ଶ୍ରେଣୀରେ ଥିଲେ ।

## ବିଲାତରେ ପଢ଼ିବା ପାଇଁ ବୃତ୍ତି

ଏହି ସମୟରେ ବିହାର ଓ ଓଡ଼ିଆ ଛାତ୍ରଙ୍କ ମଧ୍ୟରୁ ଜଣେ କାହାରି ନାମ ଡେପୁଟି ମାଜିଷ୍ଟ୍ରେଟ୍ ଚାକିରିପାଇଁ ସୁପାରିଶ କରିବାକୁ ବିହାର ଓ ଓଡ଼ିଶା ସରକାର କଲିକତା ବିଶ୍ୱବିଦ୍ୟାଳୟକୁ ଅନୁରୋଧ କଲେ । ସାର୍ ଆଶୁତୋଷ ମୁଖାର୍ଜୀ ସେତେ-ବେଳେ କଲିକତା ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ସାର୍ ଆଶୁତୋଷଙ୍କୁ ଦେଖା-କରିବା ପାଇଁ ମୋତେ କେତେକ ପରାମର୍ଶ ଦେଲେ । ଦିନେ ମୋର ଜଣେ ବନ୍ଧୁ ଶ୍ରୀ ବାଙ୍କନିଧି ପଟ୍ଟନାୟକଙ୍କ ସହିତ ମୁଁ ତାଙ୍କ ପାଖକୁ ଗଲି । ସେତେବେଳେ ସାର୍ ଆଶୁତୋଷ ତେଲ ମାଲିସ୍ ହେଉଥିଲେ ଏବଂ ବହୁ ଲୋକ ତାଙ୍କୁ ଦେଖାକରିବାପାଇଁ ଅପେକ୍ଷା କରିଥିଲେ । ଏତିକିବେଳେ ସେ କୁଆଡ଼େ ଦେଖା କରିବାକୁ ଚାହୁଁଥିବା

ଲୋକମାନଙ୍କୁ ସାକ୍ଷାତ୍ କରନ୍ତି । ମୁଁ ଯାହା ଶୁଣିଥିଲି ତାହା ସତ ବୋଲି ଆଖିରେ
ଦେଖିଲି । ସେ ଆମକୁ ଡାକିଲେ । ମୁଁ କାହିଁକି ଆସିଛି ବୋଲି କହିବାରୁ ସେ କହିଲେ
ଯୋଗ୍ୟତା ଅନୁସାରେ ତାଙ୍କୁ ବିଚାର କରିବାକୁ ପଡ଼ିବ, କିନ୍ତୁ ମୋ ବିଷୟରେ କ'ଣ
କରାଯାଇପାରେ ସେ ଦେଖିବେ । ପଦାର୍ଥବିଜ୍ଞାନରେ ପ୍ରଥମ ଶ୍ରେଣୀ ଅନର୍ସ ପାଇଥିବା
ଶ୍ରୀ କାମ୍‌ତା ପ୍ରସାଦଙ୍କ ନାମ ବିଶ୍ୱବିଦ୍ୟାଳୟ ସୁପାରିଶ କଲା । ସେ ଅଳ୍ପକାଳ ପାଇଁ
ଡେପୁଟି ମାଜିଷ୍ଟ୍ରେଟ୍ ରହିଥିଲେ । କାରଣ ପରେ ବିହାର ଓ ଓଡ଼ିଶାର ଜଣେ ସ୍କଲାର୍‌ଭାବେ
ତାଙ୍କୁ ଇଂଲଣ୍ଡ ଯିବାପାଇଁ ମନୋନୀତ କରାଯାଇଥିଲା । ଏହି ସମୟରେ ବିହାର ଓ
ଓଡ଼ିଶା ପ୍ରଦେଶ ସରକାର ଇଂଲଣ୍ଡକୁ କେତେଜଣ ଛାତ୍ରଙ୍କୁ ଉଚ୍ଚଶିକ୍ଷା ଲାଭପାଇଁ
ପଠାଇବାକୁ ସ୍ଥିର କଲେ । ୧୯୧୪ ମସିହାରେ ସେମାନେ ତିନିଜଣ ଛାତ୍ରଙ୍କୁ
ପଠାଇବାକୁ ନିଷ୍ପତ୍ତି କରିଥିଲେ । ସେଥିରୁ ଜଣେ ଓଡ଼ିଶାରୁ ଓ ଦୁଇଜଣ ବିହାରରୁ ।
ମୁଁ ପ୍ରେସିଡେନ୍‌ସି କଲେଜ ପ୍ରିନ୍‌ସିପାଲ୍ ମିଷ୍ଟର ଏଚ୍. ଆର. ଜେମ୍‌ସଙ୍କ ଜରିଆରେ
ଦରଖାସ୍ତ କଲି । ସେ ମୋର ଦରଖାସ୍ତକୁ ସୁପାରିଶ କରିଥିଲେ । ମୁଁ ଓଡ଼ିଶାରୁ ଏବଂ
ଅବ୍‌ଦୁସ ସମଦ୍ ଖାଁ ଓ ଏସ୍. ଆର୍. ୟୁ. ଜମାନ୍ ବିହାରରୁ ବଛାଗଲେ । ୧୯୧୫
ସାଲରେ ଓଡ଼ିଶାରୁ ଏସ୍. ସି. ତ୍ରିପାଠୀ ଏବଂ ବିହାରରୁ କାମ୍‌ତା ପ୍ରସାଦ ଓ ଏ. ସି.
ବାନାର୍ଜୀ ବଛାଗଲେ ।

ମୋର ଜାହାଜ ଟିକଟ କଣା ହୋଇଗଲା । ଜୀବନ ଧାରଣ ପ୍ରଣାଳୀରେ
ପରିବର୍ତ୍ତନ ପାଇଁ ମୋତେ ପ୍ରସ୍ତୁତ ହେବାକୁ ହେଲା । ନୂଆ ପୋଷାକ ଓ ଅନ୍ୟାନ୍ୟ
ବ୍ୟାବହାରିକ ଜିନିଷ କିଣିବାରେ ବନ୍ଧୁମାନେ ସାହାଯ୍ୟ କଲେ । ଏଥିସହିତ ମୋର
ପ୍ରଥମ ଯୋତା ହଳକ ବି ଥିଲା । ଯେତେବେଳେ ସବୁ ଠିକ୍‌ଠାକ୍ ହୋଇଗଲା, ୧୯୧୪
ମସିହା ଅଗଷ୍ଟ ୧୦ ତାରିଖରେ ମୁଁ ବମ୍ବେ ଅଭିମୁଖେ କଲିକତା ଛାଡ଼ିଲି ଓ ୧୪ ତାରିଖ
ସକାଳେ ସେଠାରୁ ଜାହାଜ ଧରିଲି । ଏହିପରି ଭାବରେ ମୋର ଶିକ୍ଷାଜୀବନର ଦ୍ୱିତୀୟ
ଅଧ୍ୟାୟ ଶେଷହେଲା । ପ୍ରଥମ ଅଧ୍ୟାୟ ଶେଷ ହୋଇଥିଲା ୧୯୦୧ ମସିହାରେ, ଯେତେବେଳେ
ମୁଁ ତହସିଲଦାର୍ ଅଫିସରେ ନକଲ ନବିଶ୍ କାମଛାଡ଼ି ବାଲିକୁଦା ମଧ୍ୟ ଇଂରାଜୀ
ବିଦ୍ୟାଳୟରେ ଯୋଗ ଦେଇଥିଲି । ●●

# କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ

ମୁଁ ଏଠାରେ ଉଲ୍ଲେଖ କରିପାରେ ଯେ କେମ୍ବ୍ରିଜ ଉଦ୍ଦେଶ୍ୟରେ କଲିକତା ଛାଡ଼ିବାପୂର୍ବରୁ ମୋର ଆତ୍ମୀୟ ସ୍ୱଜନମାନଙ୍କଠାରୁ ବିଦାୟ ନେବାପାଇଁ ମୁଁ ଆମ ଗାଁ ଘରଠିକି ଯାଇଥିଲି । ସେମାନେ ସେଠାରେ କେତେକ ଧାର୍ମିକ ଉତ୍ସବର ଆୟୋଜନ କରିଥିଲେ । ତାହା ମଧ୍ୟରେ ଥିଲା ଝଙ୍କଡ଼ରେ ଥିବା ଶାରଳା ଠାକୁରାଣୀଙ୍କ ମନ୍ଦିରକୁ ଯିବା । ଆମ ପରିବାରରେ, ଏପରି କି ଆମ ଗୋଷ୍ଠୀରେ ବୋଲି ମଧ୍ୟ କୁହାଯାଇପାରେ, ପାଠପଢ଼ା ହେଉ କିମ୍ବା ଯେ କୌଣସି ଶୁଭକାର୍ଯ୍ୟ ହେଉ, ସେଥିରେ ଶାରଳା ଠାକୁରାଣୀଙ୍କ ପାଖକୁ ଯାଇ କଳାଶାଢ଼ୀ ଦେବା ଏକ ପ୍ରଥାରୂପେ ରହି ଆସିଥିଲା । ମୋ କ୍ଷେତ୍ରରେ ମଧ୍ୟ ତାହା ହିଁ ହେଲା ।

## ପ୍ରଥମ ମହାଯୁଦ୍ଧ

କଲିକତାଠାରୁ ରେଳଯାତ୍ରା କରିବା ଆରମ୍ଭରେ ବହୁ ବନ୍ଧୁ ମୋତେ ବିଦାୟ ଦେବାପାଇଁ ଷ୍ଟେସନକୁ ଆସିଥିଲେ । କେବେ ତାରିଖରେ ମୁଁ କଲିକତା ଛାଡ଼ିଲି, ମୋର ଠିକ୍ ମନେ ପଡ଼ୁନାହିଁ । ବୋଧହୁଏ ୧୯୧୪ ମସିହା ଅକ୍ଟୋବର ୧୦ ତାରିଖ ହେବ । ଏହା ପୂର୍ବରୁ ଆମର ବିଲାତ ଯାତ୍ରାର ଦିନ ଠିକ୍ କରାଯାଇଥିଲା । କିନ୍ତୁ ଜୁଲାଇ ୨୮ ତାରିଖରେ ଅଷ୍ଟ୍ରିଆ ସର୍ବିଆ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାରୁ ଏବଂ ୧୯୧୪ ମସିହା ଅଗଷ୍ଟ ୪ ତାରିଖରେ ଇଂଲଣ୍ଡ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାରୁ ଯାତ୍ରା ଦିନ ସ୍ଥଗିତ ରଖିବାକୁ ପଡ଼ିଥିଲା ।

ଓଡ଼ିଶାର ଅନ୍ୟ ଜଣେ ଛାତ୍ର ଶ୍ରୀ ସଚ୍ଚିଦାନନ୍ଦ ଦାସ ପାରଳାଖେମଣ୍ଡି ମହାରାଜଙ୍କ ବୃତ୍ତି ପାଇ ବିଲାତ ଯାଉଥିଲେ । ସେ ମଧ୍ୟ ମୋ ସହିତ ଥିଲେ । ତାଙ୍କର ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ପଢ଼ିବାର ହେଲା । ସେଠାରେ ସେ ଇତିହାସ ଅଧ୍ୟୟନ କଲେ ଏବଂ ଫେରିବା ପରେ ପାରଳାଖେମଣ୍ଡି ମହାରାଜା କଲେଜର ପ୍ରିନ୍ସିପାଲ ଭାବରେ କେତେକ ବର୍ଷ କାର୍ଯ୍ୟ କଲେ । ପାରଳାଖେମଣ୍ଡି ଓଡ଼ିଶାରେ ମିଶିବା ପରେ ସେ ରେଭେନ୍ସା କଲିଜିଏଟ୍ ସ୍କୁଲ୍, ସ୍କୁଲର ଇନ୍ସପେକ୍ଟର୍, ରେଭେନ୍ସା କଲେଜର ପ୍ରିନ୍ସିପାଲ ଏବଂ ଶେଷରେ ଡି. ପି. ଆଇ. ହୋଇଥିଲେ ।

## ଆଗ୍ରୟ୍ୟ ଓ ମିଶ୍ରିତ ଶୈଳୀ

ସେହି ଗାଡ଼ିରେ ଯାତ୍ରା କରୁଥିଲେ ଭାରତ ସରକାରଙ୍କର ଜଣେ ବୃତ୍ତିଧାରୀ ଛାତ୍ର ଶ୍ରୀ ପ୍ରସନ୍ନ କୁମାର ଆଗ୍ରର୍ଯ୍ୟ । ସେ ପ୍ରାଚ୍ୟ ବିଦ୍ୟା ଅଧ୍ୟୟନ କରିବାପାଇଁ ଯାଉଥିଲେ । ବଙ୍ଗଳାର ବିଖ୍ୟାତ ସ୍ୱାଧୀନତା ସଂଗ୍ରାମର ଯୋଦ୍ଧା ଏବଂ ସୁବିଦିତ ହୋମିଓପାଥିକ୍ ଡାକ୍ତର ପ୍ରାଣକୃଷ୍ଣ ଆଗ୍ରର୍ଯ୍ୟଙ୍କର ସେ ପୁତୁରା । ଶ୍ରୀ ଆଗ୍ରର୍ଯ୍ୟ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ପ୍ରାଚ୍ୟବିଦ୍ୟା, ବିଶେଷତଃ ସଂସ୍କୃତର ଅଧ୍ୟୟନ ପାଇଁ ଯାଉଥିଲେ । ଗାଡ଼ିରେ ଆମ ଉଭୟଙ୍କର ସାକ୍ଷାତ୍ ହେଲା ଏବଂ ବମ୍ବେରେ ଆମେ ଏକାଠି ରହିଲୁ । ଯାତ୍ରା ସମୟରେ ଘନିଷ୍ଠତା ବଢ଼ିଲା ଏବଂ ଆଗ୍ରର୍ଯ୍ୟ ଓ ମୁଁ ସାରାଜୀବନ ବନ୍ଧୁ ହୋଇ ରହିଲୁ । ଶ୍ରୀ ଆଗ୍ରର୍ଯ୍ୟ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଯୋଗ ଦେଲେ ଏବଂ ମୁଁ କେମ୍ବ୍ରିଜ ଗଲି । କିନ୍ତୁ ଛୁଟି ସମୟରେ ଆମେ ପରସ୍ପରକୁ ସାକ୍ଷାତ୍ କରୁଥିଲୁ । ଲଣ୍ଡନରେ ପଢ଼ା ଶେଷ କରି ସେ ଲିଡେନ୍ ଯାଇଥିଲେ ଓ ସେଠାରୁ ଡକ୍ଟରେଟ୍ ପାଇଲେ । ଭାରତକୁ ଫେରିବା ପରେ ସେ ଆଇ. ଇ. ଏସ୍.ରେ ଯୋଗଦେଇ ଏଲ୍ଲାହାବାଦ ମ୍ୟୁଅର୍ କଲେଜର ସଂସ୍କୃତ ଅଧ୍ୟାପକ ହୋଇଥିଲେ । ପରେ ଏହି କଲେଜ ଏଲ୍ଲାହାବାଦ ବିଶ୍ୱବିଦ୍ୟାଳୟର ଅନ୍ତର୍ଭୁକ୍ତ ହେଲା । ଭାରତକୁ ଫେରିବାପରେ ଆମର ସେହିପରି ବନ୍ଧୁତା ରହିଥିଲା ଓ ବେଳେବେଳେ ଆମେ ପରସ୍ପରକୁ ସାକ୍ଷାତ୍ କରୁଥିଲୁ । ସଂସ୍କୃତରେ ଜଣେ ବିଦ୍ୱାନ ଭାବରେ ସେ ପ୍ରାଚୀନ ଭାରତୀୟ ସ୍ଥାପତ୍ୟ ବିଦ୍ୟା ପ୍ରତି ଅନୁରକ୍ତ ଥିଲେ । ସେ ଏଲ୍ଲାହାବାଦଠାରେ ନିଜର ଗୋଟିଏ ଘର ତିଆରି କରିଥିଲେ । ସେହି ଘରଟି ବିଭିନ୍ନ ଶୈଳୀର ମିଶ୍ରଣ ବୋଲି କୁହାଯାଇପାରେ । ତାହାର ଗୋଟିଏ ଭାଗ ସାଞ୍ଚିସ୍ତୁପ ଶୈଳୀରେ, ଅନ୍ୟ ଗୋଟିଏ ଭାଗ ଅନ୍ୟ ଗୋଟିଏ ଶୈଳୀରେ ଏବଂ ଆଉ ଗୋଟିଏ ଭାଗ ଆଉରି ଏକ ଶୈଳୀରେ ନିର୍ମିତ ହୋଇଥିଲା । ସେ ତାଙ୍କର ବନ୍ଧୁମାନଙ୍କୁ ଏବଂ ସାକ୍ଷାତ୍ କରିବାକୁ ଯାଉଥିବା ବ୍ୟକ୍ତିଙ୍କୁ ଗର୍ବର ସହିତ ଏହା ଦେଖାଉଥିଲେ । ସତ କହିବାକୁ ଗଲେ ମୁଁ ଏପରି ମିଶ୍ରିତ ଶୈଳୀରେ ପ୍ରଭାବିତ ହୋଇପାରି ନ ଥିଲି । ତାଙ୍କର ବହି "Glories of India" ପ୍ରାଚୀନ ଭାରତୀୟ ସଂସ୍କୃତି, କଳା, ସାହିତ୍ୟ ଓ ଦର୍ଶନ ସଂପର୍କରେ ଲିଖିତ ।

## ଜାହାଜ ଯାତ୍ରା

ବର୍ତ୍ତମାନ ଆମର ଜାହାଜ ଯାତ୍ରା ସଂପର୍କରେ ଉଲ୍ଲେଖ କରୁଛି । ୧୯୧୪ ମସିହା ଅଗଷ୍ଟ ୧୪ ତାରିଖ ଦିନ ଏସ୍. ଏସ୍. ମାଲ୍ଟୱା ନାମକ ୨୦ ହଜାର ଟନ୍ ବିଶିଷ୍ଟ

ଜାହାଜରେ ଆମେ ଚଢ଼ିଲୁ । ବିହାର ସରକାରଙ୍କ ଅନ୍ୟତମ ବୃତ୍ତିପ୍ରାପ୍ତ ଛାତ୍ର ଏସ୍. ଆର. ୟୁ. ଜମାନ ଆମ ସହିତ ଜାହାଜ ଚଢ଼ିଲେ । ଆମ ସଙ୍ଗରେ ଅନ୍ୟ ଯେଉଁମାନେ ଭାରତୀୟ ଥିଲେ, ସେମାନଙ୍କ ମଧ୍ୟରୁ ଦୁଇଜଣ ଶିଖ ଛାତ୍ରଙ୍କର ନାମ ମୋର ମନେପଡ଼ୁଛି—ଏ. ଏସ୍. ଗରେଓ୍ୱାଲ ଓ ଜେ. ଏସ୍. ଗରେଓ୍ୱାଲ । ଦୁଇଜଣଯାକ ଦୁଇ ଭାଇ । ସେମାନେ ଆଗରୁ ବିଲାତ ଯାଇ ପଢ଼ୁଥିଲେ ଏବଂ ଛୁଟିରେ ଘରକୁ ଆସି ବିଲାତକୁ ଫେରି ଯାଉଥିଲେ । ଆମର ଜାହାଜ ଏଡେନ୍, ପୋର୍ଟ ସଇଦ୍, ମାଲ୍ଟା, ମାର୍ସେଲସ୍ ଓ ଓ ଜିବ୍ରାଲ୍ଟର୍‌ଠାରେ ରହିଲା । ସାମାନ୍ୟ ବୋଇତ ଚଢ଼ା ଅସୁସ୍ଥତା ବ୍ୟତୀତ ସମଗ୍ର ଯାତ୍ରାରେ ମୋର ବିଶେଷ କିଛି ହୋଇ ନାହିଁ । ପ୍ରତ୍ୟେକ ବନ୍ଦରରେ ଆମେ ଜାହାଜରୁ ଓହ୍ଲାଇ ସହର ଭିତରକୁ ଯାଉଥିଲୁ । ସବୁଠାରେ ଭାରତୀୟ ବ୍ୟବସାୟୀ ଥିଲେ । ଏପରି କି ଜିବ୍ରାଲ୍ଟର୍‌ରେ ମଧ୍ୟ ଆମେ ଭାରତୀୟ ବ୍ୟବସାୟୀମାନଙ୍କୁ ଦେଖିଲୁ । ଆମର ଲଣ୍ଡନରେ ପହଞ୍ଚିବାର କଥା । କିନ୍ତୁ ଜାହାଜକୁ ସତର୍କ କରି ଦିଆଯାଇଥିଲା ଯେ ଇଂଲଣ୍ଡ ପ୍ରଣାଳୀ ଭିତରେ ମାଇନ୍ ଖଞ୍ଜାଯାଇଛି; ଅର୍ଥାତ୍ ବୋମାମାନ ରଖାଯାଇଛି । ତେଣୁ ଜାହାଜ ଲଣ୍ଡନ ନ ଯାଇ ପ୍ଲାଇମାଉଥ୍ ଅଭିମୁଖେ ଗଲା ।

ବମ୍ବେରୁ ପ୍ଲାଇମାଉଥ୍ ଲାଗିଲା କୋଡ଼ିଏ ଦିନ । ସେଠାରୁ ଆମେ ଗାଡ଼ିରେ ଲଣ୍ଡନ ଗଲୁ । ଇଂଲଣ୍ଡରେ ଗାଡ଼ିରେ ମାତ୍ର ଦୁଇଟି ଶ୍ରେଣୀ—ପ୍ରଥମ ଶ୍ରେଣୀ ଓ ତୃତୀୟ ଶ୍ରେଣୀ । ଅଧିକାଂଶ ଯାତ୍ରୀ ତୃତୀୟ ଶ୍ରେଣୀରେ ଯାଆନ୍ତି । କେବଳ ଲଣ୍ଡନଠାରୁ ଡୋଭର୍ ଯାଉଥିବା ଏକ୍ସପ୍ରେସ ଗାଡ଼ିରେ ତିନୋଟି ଶ୍ରେଣୀ ଥିଲା । ଜାହାଜ କମ୍ପାନୀ ଆମର ଟିକଟ କରିଥିଲେ । ଭାରତରୁ ଆସି ଏଠାରେ ସେପ୍ଟେମ୍ବର ମାସ ମଧ୍ୟ ଆମ ପକ୍ଷରେ ଅତିଶୟ ଥଣ୍ଡା ଜଣାଗଲା । ଯାତ୍ରା ସମୟରେ ସେପରି ବିଶେଷ କିଛି ସ୍ମରଣୀୟ ଘଟଣା ମୋର ମନେ ପଡ଼ୁନାହିଁ । କେବଳ ଯୁଦ୍ଧ ଘୋଷଣା ଯୋଗୁଁ ଯାହା ଏକ ଉତ୍ତେଜନାପୂର୍ଣ୍ଣ ବାତାବରଣ ଥିଲା । ଲଣ୍ଡନରେ ପହଞ୍ଚିବା ପରେ ଇଣ୍ଡିଆ ଅଫିସର ଜଣେ ଭଦ୍ରବ୍ୟକ୍ତି ମୋ ସହିତ ସାକ୍ଷାତ କଲେ ଏବଂ ଯେଉଁ ହଷ୍ଟେଲରେ ନୂଆ ହୋଇ ଆସୁଥିବା ଭାରତୀୟ ଛାତ୍ରମାନେ ବିଭିନ୍ନ କଲେଜ ଏବଂ ବିଶ୍ୱବିଦ୍ୟାଳୟରେ ଯୋଗ ଦେବାପୂର୍ବରୁ ରହନ୍ତି, ସେଠାରେ ମତେ ନେଇ ରଖାଇଲେ । ଫିଲ୍ଡ୍ ନାମକ ଜଣେ ବ୍ୟକ୍ତି ଏହି ଦାୟିତ୍ୱରେ ଥିଲେ । ଗରେଓ୍ୱାଲ ଭ୍ରାତାଦ୍ୱୟ ଆମଠାରୁ ବିଦାୟ ନେଇ ଚାଲିଗଲେ । କାରଣ ସେମାନେ ବିଲାତରେ ନୂଆ ନ ଥିଲେ । ସେମାନଙ୍କ ମଧ୍ୟରୁ ଜଣେ ଏ. ଏସ୍. ଗରେଓ୍ୱାଲ ଡାକ୍ତରୀ ପଢ଼ୁଥିଲେ ଏବଂ ଅନ୍ୟ ଜଣକ ଜେ. ଏସ. ଗରେଓ୍ୱାଲ ପଶୁଚିକିତ୍ସା ବିଜ୍ଞାନ

ପଶ୍ଚିମ ଉତ୍ତରପ୍ରଦେଶର କୌଣସି ଏକ ପ୍ରଦେଶରେ ଭେଟେରିନେରି ବିଭାଗରେ ଯୋଗ ଦେଇଥିଲେ । ଶେଷରେ ସେ ବିହାର-ଓଡ଼ିଶା ଭେଟେରିନେରି ସର୍ଭିସର ଡିରେକ୍ଟର ହୋଇଥିଲେ ।

ଅଳ୍ପଦିନପାଇଁ ଭାରତୀୟ ଛାତ୍ରମାନଙ୍କ ନିମିତ୍ତ ଉଦ୍ଦିଷ୍ଟ ହଷ୍ଟେଲରେ ଆମକୁ ରଖାଗଲା । ସେଠାରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ରସାୟନଶାସ୍ତ୍ର ଅଧ୍ୟୟନ କରୁଥିବା ଶ୍ରୀ ସୁରେଶ ଚନ୍ଦ୍ର ସେନ୍‌ଙ୍କ ସହିତ ମୋର ସାକ୍ଷାତ୍ ହେଲା । ଭାରତକୁ ଫେରିବା ପରେ ଦାର୍ଜିଲିଂଠାରେ ସେ ସରକାରୀ ସିଙ୍କୋନା ବଗିଚାରେ ରସାୟନବିଦ୍ ଭାବରେ ଯୋଗ-ଦେଲେ । ପରେ କଲିକତାଠାରେ ଥିବା ଡାକ୍ତର ମହଲାନବିଶଙ୍କ ପରିସଂଖ୍ୟାନ ସଂସ୍ଥାର ଶାସନ ମୁଖ୍ୟଭାବରେ ସେ ଯୋଗଦେଇଥିଲେ ।

ସଚ୍ଚିଦାନନ୍ଦ ରାୟ ଅକ୍‌ସଫୋର୍ଡ ଗଲେ ଏବଂ ମୁଁ ଓ ଏସ୍. ଆର୍. ୟୁ. ଜମାନ ୧୯୧୪ ସେପ୍‌ଟେମ୍ବର ୧୪ ତାରିଖ ଦିନ କେମ୍ବ୍ରିଜ ଯାତ୍ରା କଲୁ । ଜମାନ ଟ୍ରିନିଟି କଲେଜରେ ଯୋଗଦେଲେ ଏବଂ ମୁଁ କ୍ରାଇଷ୍ଟ'ସ୍ କଲେଜରେ ଯୋଗ ଦେଲି । କ୍ରାଇଷ୍ଟ'ସ୍ କଲେଜର ଛାତ୍ର ସଂଖ୍ୟା ଦୁଇଶହ । ଟ୍ରିନିଟି ଓ ସେଣ୍ଟ ଜନ୍‌ସ୍ ତୁଳନାରେ ଏହା କ୍ଷୁଦ୍ର ହେଲେ ମଧ୍ୟ ଏକ ଐତିହାସିକ ଅନୁଷ୍ଠାନ । ଏଥିରୁ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନଙ୍କ ମଧ୍ୟରେ ସାର୍ ଫିଲିପ୍ ସିଡ୍‌ନିଙ୍କ ନାମ ଉଲ୍ଲେଖଯୋଗ୍ୟ । ମାନବପ୍ରେମୀ ଏହି ବିଖ୍ୟାତ ସୈନିକ ନିଜେ ତୃଷାର୍ତ୍ତ ଥାଇ ମଧ୍ୟ ଆଉ ଜଣେ ତୃଷାର୍ତ୍ତ ସୈନିକଙ୍କୁ ପାଣି ଗିଲାସେ ଦେଇ କହିଥିଲେ, "ମୋ ଅପେକ୍ଷା ତାଙ୍କର ଏହା ବେଶି ଦରକାର ।" କବି ମିଲ୍‌ଟନ୍ ଓ ଚାର୍ଲସ ଡାରୱିନ୍ ମଧ୍ୟ କ୍ରାଇଷ୍ଟ'ସ୍ କଲେଜର ଛାତ୍ର ଥିଲେ । ଏଠାରେ ମିଲ୍‌ଟନ୍ ଗୋଟିଏ ତୁତକୋଳି ଗଛର ଚାରା ରୋପଣ କରିଥିଲେ । ଏବେ ସେ ଗଛଟି ଅଛି ଏବଂ ଭ୍ରମଣକାରୀମାନଙ୍କର ଦର୍ଶନୀୟ ବସ୍ତୁ ହୋଇ ରହିଛି । କଲେଜର ଖାଇବା ଘର କାନ୍ଥରେ ଏହି ସବୁ ବିଖ୍ୟାତ ଲୋକଙ୍କର ଛବି ଟଙ୍ଗାଯାଇଛି । ଥରେ ଅକ୍‌ସଫୋର୍ଡ କଲେଜର ଜଣେ ଫେଲୋ, ଜଣେ କ୍ରାଇଷ୍ଟ'ସ୍ କଲେଜ ଫେଲୋ ସହିତ ଖାଉଥିବା ବେଳର ଏକ କାହାଣୀ ଅଛି । ସେ ଏହିସବୁ ବଡ଼ ଲୋକଙ୍କର ଛବି ଦେଖି ବିଶ୍ୱାସ କରିପାରିଲେ ନାହିଁ ଯେ ସେମାନେ କ୍ରାଇଷ୍ଟ'ସ୍ କଲେଜର ଛାତ୍ର । ତେଣୁ ସେ ମାଷ୍ଟର (କଲେଜର ମୁଖ୍ୟ)ଙ୍କୁ ଏହି ମନ୍ତବ୍ୟ ପ୍ରକାଶ କଲେ, "ଆମେ ଅକ୍‌ସ୍-ଫୋର୍ଡରେ କେବଳ ସେଠାରେ ପଢୁଥିବା ଲୋକଙ୍କର ଚିତ୍ର ରଖୁ ।" ମାଷ୍ଟର ଉତ୍ତର ଦେଲେ, "ଆମେ ମଧ୍ୟ ସେପରି କରୁ ।" ସେଥିରେ ଫେଲୋ ବଡ଼ ଅପ୍ରସ୍ତୁତ ହୋଇଗଲେ ।

ଭାରତୀୟମାନଙ୍କ ଦୃଷ୍ଟିରୁ କ୍ରାଇଷ୍ଟ'ସ୍ କଲେଜ ଏକ ଐତିହାସିକ ଅନୁଷ୍ଠାନ । କାରଣ କେମ୍ବ୍ରିଜର ଏହି କଲେଜ ପ୍ରଥମେ ଭାରତୀୟ ଛାତ୍ରମାନଙ୍କୁ ସେଠାରେ ନାମ ଲେଖାଇବାପାଇଁ ଅନୁମତି ଦେଇଥିଲା । ତା'ପରେ ସେଣ୍ଟ ଜନ୍‌ସ୍ କଲେଜରେ ଭାରତୀୟ ଛାତ୍ରମାନଙ୍କୁ ପଢ଼ିବାପାଇଁ ଅନୁମତି ମିଳିଲା । କ୍ରାଇଷ୍ଟ'ସ୍ କଲେଜ ଭାରତୀୟମାନଙ୍କୁ ଅନୁମତି ଦେବା ପୂର୍ବରୁ ସେମାନେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଭର୍ତ୍ତିହୋଇ ପାରୁ ନ ଥିଲେ । ଏପରିକି ମୋ ସମୟରେ ସେଲ୍‌ୱିଇନ କଲେଜ ଭାରତୀୟମାନଙ୍କୁ ଗ୍ରହଣ କରୁ ନ ଥିଲା । କାରଣ ସ୍ୱରୂପ ଦର୍ଶାଯାଉଥିଲା ଯେ ଏହା ଏକ ଖ୍ରୀଷ୍ଟାନ ଧର୍ମ ସମ୍ପର୍କୀୟ କଲେଜ । କ୍ରାଇଷ୍ଟ'ସ କଲେଜ ଭାରତୀୟମାନଙ୍କୁ ପ୍ରଥମେ ଅନୁମତି ଦେଇଥିବାଯୋଗୁଁ ବହୁ ବିଶିଷ୍ଟ ଭାରତୀୟ ଏହି କଲେଜର ଛାତ୍ର ଥିଲେ । ଏଠାରେ ତତ୍କାଳୀନ ହାଇକୋର୍ଟ ଜଜ୍ ହୋଇଥିବା ଜଷ୍ଟିସ୍ ମହମ୍ମଦ, ଆନନ୍ଦ ମୋହନ ଘୋଷ ଏବଂ ସାର୍ ଜଗଦୀଶ ଚନ୍ଦ୍ର ବୋଷ, ସାର୍ କେ. ରାମନ ମେନନ୍ (ମାଡ୍ରାସ୍ ପ୍ରେସିଡେନ୍‌ସି କଲେଜର ପ୍ରାଣୀତତ୍ତ୍ୱ ଅଧ୍ୟାପକ ଓ ପରେ ମାଡ୍ରାଜ ବିଶ୍ୱବିଦ୍ୟାଳୟର କୁଳପତି)ଙ୍କ ନାମ ଉଲ୍ଲେଖ କରାଯାଇପାରେ ।

ଏଠାରେ କେମ୍ବ୍ରିଜ କଲେଜର ସଂଗଠନ ସମ୍ପର୍କରେ ପାଠକମାନଙ୍କୁ କିଛି ଧାରଣା ଦେବା ଆବଶ୍ୟକ ମନେକରୁଛି । କଲେଜର ଅଧ୍ୟକ୍ଷଙ୍କୁ ସାଧାରଣତଃ ମାଷ୍ଟର କୁହାଯାଏ । ବେଳେ ବେଳେ ତାଙ୍କୁ ପ୍ରେସିଡେଣ୍ଟ, ପ୍ରୋଭୋଷ୍ଟ ନାମରେ ମଧ୍ୟ ଡକା ଯାଇଥାଏ । ତାପରେ ଫେଲୋଜ୍ । ଏମାନଙ୍କର ସଂଖ୍ୟା ସବୁ କଲେଜରେ ସମାନ ନୁହେଁ । ମୋ ସମୟରେ ଖ୍ରୀଷ୍ଟ କଲେଜର ୧୪ ଜଣ ଫେଲୋ ଥିଲେ । ମାଷ୍ଟର ଫେଲୋ-ମାନଙ୍କଦ୍ୱାରା ନିର୍ବାଚିତ ହୁଅନ୍ତି । ଅଧିକାଂଶ ଫେଲୋ ନିର୍ବାଚିତ ବ୍ୟକ୍ତି । ଯଦି କୌଣସି ଶୂନ୍ୟସ୍ଥାନ ଥାଏ, ତାହାହେଲେ ମାଷ୍ଟର ଓ ଅବଶିଷ୍ଟ ଫେଲୋମାନେ ଜଣେ ନୂଆ ଫେଲୋଙ୍କୁ ନିର୍ବାଚିତ କରନ୍ତି । ବିଶ୍ୱବିଦ୍ୟାଳୟ ନିୟମ ଅନୁଯାୟୀ ବିଶ୍ୱବିଦ୍ୟାଳୟର ସବୁ ଅଧ୍ୟାପକ କୌଣସି ନା କୌଣସି କଲେଜର ଫେଲୋ ହେବା ଆବଶ୍ୟକ । ତେଣୁ ପ୍ରତ୍ୟେକ କଲେଜରେ ଅଧ୍ୟାପକ ଫେଲୋମାନଙ୍କୁ ଦେଖିବାକୁ ମିଳେ । ବିଶ୍ୱବିଦ୍ୟାଳୟ ପ୍ରତ୍ୟେକ କଲେଜ ପାଇଁ ଅଧ୍ୟାପକ ଫେଲୋଙ୍କ ସଂଖ୍ୟା ନିରୂପଣ କରିଦେଇଥାଏ । ଯଦି ନିରୂପଣ ସମୟରେ କୌଣସି କଲେଜରେ ଏଥିପାଇଁ ଶୂନ୍ୟସ୍ଥାନ ନ ଥାଏ, ତାହାହେଲେ ଜଣେ ଅଧ୍ୟାପକଙ୍କୁ ଫେଲୋରୂପେ ନ ନେଇପାରୁଥିବା ଯୋଗୁଁ ସେହି କଲେଜକୁ କିଛି ବାର୍ଷିକ ଅର୍ଥ ଦେବାକୁ ପଡ଼େ । ଫେଲୋମାନଙ୍କର ତାକ ନାମ ଡନ୍ । ଏମାନଙ୍କ ମଧ୍ୟରୁ

ଜଣେ ଡିନ୍ ନିର୍ବାଚିତ ହୁଅନ୍ତି ଏବଂ ସେ କଲେଜର ଶୃଙ୍ଖଳା ରକ୍ଷାପାଇଁ ଦାୟୀ ରହନ୍ତି । ଯଦି କିଛି ଗୁରୁତର ବିଶୃଙ୍ଖଳା ଘଟିଲା, ଡିନ୍ ଜଣେ ଛାତ୍ରଙ୍କୁ କଲେଜରୁ ଓ ବିଶ୍ୱବିଦ୍ୟାଳୟରୁ ବହିଷ୍କୃତ କରିଦେଇପାରନ୍ତି ।

ମୋ' ସମୟରେ ମାଷ୍ଟର, ଫେଲୋ ଏବଂ ଅଧ୍ୟାପକମାନଙ୍କର କାର୍ଯ୍ୟକାଳ ସାରାଜୀବନପାଇଁ ଥିଲା । ସୁତରାଂ ସେତେବେଳେ ଥଟ୍ଟାରେ କୁହାଯାଉଥିଲା, "ମୃତ୍ୟୁ, ଇସ୍ତଫାଦାନ କିମ୍ବା ହତ୍ୟାଦ୍ୱାରା ହିଁ କେବଳ ଶୂନ୍ୟସ୍ଥାନ ସୃଷ୍ଟି ହୋଇପାରେ ।" କିନ୍ତୁ ଏବେ ଏକ ବୟସଗତ ସୀମା ନିର୍ଦ୍ଧାରଣ କରାଯାଇଛି । ତାହା ହେଉଛି ୭୦ ବର୍ଷ ।

ପ୍ରତ୍ୟେକ କଲେଜର ଛାତ୍ର ସଂଖ୍ୟା ସୀମିତ । କ୍ରାଇଷ୍ଟ'ସ୍ କଲେଜର ଛାତ୍ର ସଂଖ୍ୟା ଥିଲା ଦୁଇ ଶହ । ଜଣେ ଛାତ୍ରକୁ କଲେଜରେ ଗୋଟିଏ ରୁମ୍ ନେଇ କିମ୍ବା କଲେଜ ଛାତ୍ର ରହିବାପାଇଁ ଲାଇସେନ୍ସପ୍ରାପ୍ତ ବସାଘରେ ରହିବାକୁ ପଡୁଥିଲା । କଲେଜରେ ସବୁ ଛାତ୍ରଙ୍କର ରହିବା ପାଇଁ ଘର ନ ଥିବା ଯୋଗୁଁ କେତେକ ଛାତ୍ରଙ୍କୁ ଲାଇସେନ୍ସ ପ୍ରାପ୍ତ ବସା ଘରେ ରହିବାକୁ ପଡୁଥିଲା । ଅବଶ୍ୟ ସମାନ୍ୟସ୍ତରେ ବର୍ଷକ ପାଇଁ ପ୍ରତ୍ୟେକ ଛାତ୍ରକୁ କଲେଜରେ ଗୋଟିଏ ରୁମ ମିଳୁଥିଲା । ଉପର ଶ୍ରେଣୀରେ ପଢୁଥିବା ଛାତ୍ରମାନେ ଘର ଛାଡ଼ିଦେଉଥିଲେ ଓ ତଳେ ପଢୁଥିବା ଛାତ୍ରମାନେ ସେଠାରେ ଆସି ରହୁଥିଲେ । କଲେଜରେ ଗୋଟିଏ ରୁମ୍ ବାସ୍ତବରେ ତିନୋଟି ରୁମର ସମାବେଶ ଥିଲା— ଗୋଟିଏ ଶୋଇବା ଘର, ଗୋଟିଏ ବୈଠକଖାନା ଏବଂ ଗୋଟିଏ ଭଣ୍ଡାର ଘର । ବାହାରେ ଥିବା ବସାଘରେ ମଧ୍ୟ ଜଣେ ଛାତ୍ର ଗୋଟିଏ ଶୋଇବା ଘର ଏବଂ ଗୋଟିଏ ବୈଠକ-ଖାନା ପାଉଥିଲା । ଛାତ୍ରଙ୍କ ସଂଖ୍ୟା ବଢ଼ିଯିବା ପରେ ଏ ବ୍ୟବସ୍ଥାର ପରିବର୍ତ୍ତନ ହୋଇଛି । ବର୍ତ୍ତମାନ ପ୍ରତ୍ୟେକ ଛାତ୍ର କେବଳ ଗୋଟିଏ ଘର ପାଉଛନ୍ତି । କେବଳ କ୍ରାଇଷ୍ଟ'ସ କଲେଜର ଛାତ୍ର ସଂଖ୍ୟା ହେଉଛି ପାଞ୍ଚ ଶହ ।

ଜଣେ ଛାତ୍ର କଲେଜରେ ରହୁ ବା ଲାଇସେନ୍ସପ୍ରାପ୍ତ ବସାଘରେ ରହୁ, କଲେଜ ହଲରେ ତାକୁ ନିଶ୍ଚୟ ଖାଇବାକୁ ହେବ । ସେ କେବଳ ସପ୍ତାହରେ ଥରେ ଖାଇବାବେଳେ ଅନୁପସ୍ଥିତ ରହିପାରେ । ଯଦି ସେ ବେଶି ଅନୁପସ୍ଥିତ ରହେ, ତାହାହେଲେ ତାକୁ ଖାଇବା ଖର୍ଚ୍ଚଟା ଦେବାକୁପଡ଼େ । ଯଦି ଏପରି ଅନୁପସ୍ଥିତ ହେବାଟା ତାର ଅଭ୍ୟାସଗତ ହୋଇଗଲା, ତାହାହେଲେ ତାକୁ ଡିନ୍‌ଙ୍କ ପାଖରେ ଏଥିପାଇଁ କୈଫିୟତ୍ ଦେବାକୁ ପଡ଼ିବ । ଭୋଜନଶାଳାରେ "ଫ୍ରେସ୍‌ମେନ୍" (ପ୍ରଥମ ବାର୍ଷିକ ଛାତ୍ରମାନଙ୍କୁ Freshors କୁହାଯାଏ) କେନ୍ଦ୍ର ସ୍ଥଳରେ ବସନ୍ତି । ଦ୍ୱିତୀୟ ବାର୍ଷିକ ଛାତ୍ରମାନେ

ଘରଭିତରେ ପଶିଲେ କେନ୍ଦ୍ରର ବାମକୁ ଥିବା ଟେବୁଲ ପାଖରେ ବସନ୍ତି ଏବଂ ତୃତୀୟ ବାର୍ଷିକ ଛାତ୍ରମାନେ ତାହାଙ୍କୁ ବସନ୍ତି । ଭୋଜନଶାଳାର ଶେଷରେ ଗୋଟିଏ ଉନ୍ନତ ମଞ୍ଚ ଉପରେ ମାଷ୍ଟର ଓ ଫେଲୋମାନେ ବସନ୍ତି । କୌଣସି ବିଶିଷ୍ଟ ବ୍ୟକ୍ତି ଖାଇବାକୁ ନିମନ୍ତ୍ରିତ ହୋଇ ଆସିଲେ ସେ ଫେଲୋମାନଙ୍କ ସହିତ ବସି ଭୋଜନ କରନ୍ତି । ମୋ ସମୟରେ ଦକ୍ଷିଣ ଆଫ୍ରିକାର ଜେନେରାଲ୍ ସ୍ମଟସ୍ ଏହିପରି ନିମନ୍ତ୍ରିତ ହୋଇ ଆସିଥିଲେ ଏବଂ କଲେଜର ସେ ପୁରାତନ ଛାତ୍ରଥିବା ଯୋଗୁଁ ଛାତ୍ରମାନଙ୍କ ପକ୍ଷରୁ ବିପୁଳ ଆନନ୍ଦ ଧ୍ୱନିରେ ତାଙ୍କୁ ସ୍ୱାଗତ କରାଯାଇଥିଲା ।

ସ୍ନାତକୋତ୍ତର ଛାତ୍ରମାନେ କଲେଜ ଉପର ମହଲରେ ଥିବା ବାଲ୍‌କୋନିରେ ଖାଉଥିଲେ । କଲେଜ ଘରେ ରହୁଥିବା ଛାତ୍ରମାନେ ସେମାନଙ୍କର ପ୍ରାତଃଭୋଜନ ଓ ମଧ୍ୟାହ୍ନଭୋଜନ ନିଜ ରୁମ୍‌ରେ କରିବାରେ କୌଣସି ଆପତ୍ତି ନ ଥିଲା । ଧନୀ ଛାତ୍ରମାନେ କଲେଜ ପାକଶାଳାରୁ ସେମାନଙ୍କର ପ୍ରାତଃଭୋଜନ ଓ ମଧ୍ୟାହ୍ନଭୋଜନ ଅର୍ଡର ଦେଇ ମଗାଇ ପାରୁଥିଲେ । ଅନ୍ୟମାନେ ନିଜେ ନିଜେ ପରିଜ୍ ବା ଖିଚୁ ରାନ୍ଧି ଏବଂ ଅଣ୍ଡା ସିଝାଇ ଖାଇବା ବ୍ୟବସ୍ଥା କରୁଥିଲେ । ଏ କାର୍ଯ୍ୟରେ ବେଳେ ବେଳେ ଜିପ୍(gyp)ମାନେ ତାଙ୍କୁ ସାହାଯ୍ୟ କରୁଥିଲେ । ଗୋଟିଏ ସିଡ଼ି (ଷ୍ଟେୟାରକେସ୍) ୪ଟି କିମ୍ବା ୫ଟି ରୁମ୍‌ପାଇଁ ଥାଏ । ଏପରି ଦୁଇଟି ସିଡ଼ିରେ ଥିବା ରୁମ୍‌ମାନଙ୍କର ବୁଝା ଶୁଣା କରିବା ଗୃହଚାକରର ନାମ ହେଉଛି ଜିପ୍ । ପାଞ୍ଚଜଣ ଛାତ୍ର ସେଠାରେ ରହନ୍ତି । ଏହି ଗୃହଚାକରକୁ ତାର ସ୍ତ୍ରୀ ମଧ୍ୟ ସାହାଯ୍ୟ କରେ । ମୁଁ ଯେତେବେଳେ କଲେଜରେ ରହିଲି, ମୋ ସିଡ଼ିର ନମ୍ବର ଥିଲା 'ଏମ୍' । ମୁଁ ସବା ଉପର ରୁମ୍‌ରେ ରହୁଥିଲି । ମୋର ଜିପ୍‌ର ନାମ ଥିଲା ବେନେଟ୍ । ଆମ ଦୁହିଁଙ୍କ ଭିତରେ ଭଲ ପଡୁଥିଲା ଏବଂ ସେ ଥରେ ତା' ଘରକୁ ମୋତେ ଚାହା ଖାଇବାପାଇଁ ଡାକିଥିଲା ।

ଜଣେ ଛାତ୍ର କଲେଜରେ ରହୁ ବା ଲାଇସେନ୍‌ସ୍‌ପ୍ରାପ୍ତ ବସାଘରେ ରହୁ ଦଶଟା ପୂର୍ବରୁ ତାକୁ ନିଜ ରୁମ୍‌କୁ ଫେରିଆସିବାକୁ ହେବ । ଯଦି ଡେରି ହେଲା ତାହାହେଲେ ଜରିମାନା ଦେବାକୁ ପଡ଼ିବ । ଦଶଟାଠାରୁ ଏଗାରଟା ଭିତରେ ଆସିଲେ ତିନି ପେନ୍‌ସ୍ ଦଶଟାରୁ ବାରଟା ଭିତରେ ଆସିଲେ ଗୃର ପେନ୍‌ସ୍ ଦେବାକୁ ପଡୁଥିଲା । ବାରଟା ପରେ ଆସିଲେ ସାଧାରଣ ପୁରୁଷର ଅପରାଧ ବୋଲି ବିଚାର କରାଯାଉଥିଲା । ବାରମ୍ବାର ଏପରି ଆସିଲେ କଲେଜରୁ ବହିଷ୍କୃତ କରାଯାଉଥିଲା । ସପ୍ତାହରେ କେତେକ ଦିନ ଅବଶ୍ୟ ଛାତ୍ରମାନଙ୍କର ଡେରିରେ ଫେରିବାରେ ଆପତ୍ତି ନ

ଥିଲା । ମୋର ଜଣେ ସମକାଳୀନ ଛାତ୍ରଙ୍କ କଥା ମନେପଡ଼ୁଛି । ମୈମନ ସିଂର ଅନ୍‌ଓ୍ୱାରୁଲ୍ ଆଜମ୍; ତାଙ୍କର କେବେହେଲେ ଡେରି ହୋଇ ନ ଥିଲା । ଡିନ୍ ତାଙ୍କୁ ଡକାଇ ପଠାଇ ପଚାରିଲେ, ତୁମର କ'ଣ କେହି ବନ୍ଧୁ ନାହାନ୍ତି, ନା ତୁମେ କାହା ସହିତ ମିଶାମିଶି କର ନାହିଁ ? କାହିଁ ତମର ତ ଦିନେ ହେଲେ ସନ୍ଧ୍ୟାବେଳେ ଡେରି ହେଉନାହିଁ !

କଲେଜ ଗେଟ୍ ଓ ଲାଇସେନ୍‌ସ୍‌ପ୍ରାପ୍ତ ବସାଘରର ଦ୍ୱାର ସବୁ ଠିକ୍ ଦଶଟା ବେଳେ ବନ୍ଦ ହଉଥିଲା । ପୋର୍ଟର ବା ଦ୍ୱାରରକ୍ଷକ ଡେରିରେ ଫେରୁଥିବା ସବୁ ଛାତ୍ରଙ୍କ ନାମ ଲେଖି ରଖୁଥିଲା । ବସାଘରର ମାଲିକାଣୀ ଡେରିରେ ଫେରୁଥିବା ସମସ୍ତଙ୍କର ନାମ କଲେଜକୁ ରିପୋର୍ଟ କରୁଥିଲା । ତା' ନହେଲେ ତା'ର ଲାଇସେନ୍‌ସ୍ କଟିଯାଆନ୍ତା । ପୋର୍ଟରମାନେ ଖୁବ୍ ଭଲ ପୋଷାକ ପିନ୍ଧୁଥିଲେ । ରବିବାର ଦିନ ସକାଳୁଆ ସେମାନେ କୋଟ ଓ ଉଚ୍ଚା ଟୋପି ପିନ୍ଧୁଥିଲେ । ପ୍ରକୃତରେ ସେମାନେ ଡନ୍‌ମାନଙ୍କଠାରୁ ଭଲ ପୋଷାକ ପିନ୍ଧନ୍ତି । ନୂଆ ଛାତ୍ରମାନଙ୍କର କ'ଣ କରିବା ଉଚିତ ନୁହେଁ, ସେ ସଂପର୍କରେ ଏକ ପୁସ୍ତିକା ପ୍ରକାଶିତ ହୁଏ । ସାଧାରଣତଃ ନୂଆ ହୋଇ ଯୋଗ ଦେଉଥିବା ଛାତ୍ର-ମାନେ କେତେକ ସାଧାରଣ ଭୁଲ କରନ୍ତି । ତାହାର ସଂଶୋଧନ ପାଇଁ ଏହି ପୁସ୍ତିକା ଉଦ୍ଦିଷ୍ଟ । ସେଥିରେ ଗୋଟିଏ ବିଷୟ ହେଲା, "ପୋର୍ଟରକୁ ଦେଖି ଡନ୍ ବୋଲି ଭୁଲ ବୁଝିବ ନାହିଁ, ଡନ୍ ଅପେକ୍ଷା ପୋର୍ଟର ଭଲ ପୋଷାକ ପିନ୍ଧେ ।"

ଯାହାହେଉ, ପୋର୍ଟର ଓ ବସାଘରମାନଙ୍କର ମାଲିକାଣୀଙ୍କ ସମେତ ସମସ୍ତେ ଖୁବ୍ କଠୋରଭାବରେ ନିୟମ ମାନି ଚଳନ୍ତି । ଭାରତୀୟମାନେ ଏଇଟା ବିଶେଷ ଭାବେ ଲକ୍ଷ୍ୟ କରନ୍ତି, କାରଣ ସ୍ୱଭାବତଃ ସେମାନେ ଢିଲା କାରବାରରେ ଅଭ୍ୟସ୍ତ ।

## ଟ୍ୟୁଟର୍ ପ୍ରଥା ଓ ନାଲନ୍ଦୀୟ ବ୍ୟବସ୍ଥା

ଶିକ୍ଷା କ୍ଷେତ୍ରରେ ଛାତ୍ରମାନଙ୍କର ତତ୍ତ୍ୱାବଧାନ କରିବାର ଦାୟିତ୍ୱ ଥାଏ ଟ୍ୟୁଟର୍‌ମାନଙ୍କ ଉପରେ । ପ୍ରତ୍ୟେକ ଛାତ୍ରଙ୍କୁ ଜଣେ ଟ୍ୟୁଟର୍‌ଙ୍କ ତତ୍ତ୍ୱାବଧାନରେ ରହିବାକୁ ପଡ଼େ । ଟ୍ୟୁଟର୍ ଉଭୟ ତଳ ଓ ଉପର ଶ୍ରେଣୀର ଛାତ୍ରଙ୍କୁ ଦେଖା ଶୁଣା କରନ୍ତି । ସପ୍ତାହରେ ଥରେ ପ୍ରତ୍ୟେକ ଛାତ୍ରଙ୍କୁ ସାକ୍ଷାତ୍ କରି ସେ ତାଙ୍କର ସୁବିଧା ଅସୁବିଧା କଥା ପଚାରି ବୁଝନ୍ତି । ଛାତ୍ରଙ୍କ ରହିବା ପାଇଁ କଲେଜରେ ବା ବସାଘରରେ ସେ ବନ୍ଦୋବସ୍ତ କରୁଥିଲେ ଏବଂ କେମ୍ବ୍ରିଜ ଛାଡ଼ିବାପାଇଁ ଅନୁମତି ପତ୍ର ଦେଉଥିଲେ । ଏହି ଅନୁମତି ପତ୍ରକୁ ଏକ୍‌ଜିଆଟ୍ (Exeat) କୁହାଯାଉଥିଲା । ଏହାର ଲାଟିନ ଅର୍ଥ ହେଉଛି—ସେ

ବାହାରକୁ ଯାଉ । ବିନା ଅନୁମତି ପତ୍ରରେ କେମ୍ବ୍ରିଜ ଛାଡ଼ି ଯିବା ବିଶୃଙ୍ଖଳା ବୋଲି ମନେ କରାଯାଉଥିଲା । ଯଦି କୌଣସି ଛାତ୍ର ତାଙ୍କ ପାଠ୍ୟ ବିଷୟରେ କିଛି ସାହାଯ୍ୟ ପାଇବା ଆବଶ୍ୟକ ବୋଲି ଟ୍ୟୁଟର୍‌ଙ୍କର ମନେ ହେଉଥିଲା, ତାହାହେଲେ ସେ ଜଣେ ତତ୍ତ୍ୱାବଧାରକ ନିଯୁକ୍ତ କରୁଥିଲେ । ସପ୍ତାହରେ ଥରେ କିମ୍ବା ଦୁଇ ଥର ତତ୍ତ୍ୱାବଧାରକଙ୍କ ପାଖକୁ ଯିବାକୁ ହୁଏ । ଦୀ,କାର ପଡ଼ିଲେ ତାଙ୍କ ସୁବିଧା ଅନୁସାରେ ତତ୍ତ୍ୱାବଧାରକ ମଧ୍ୟ ଛାତ୍ରଙ୍କ କୋଠରିକୁ ଆସନ୍ତି ।

ବିଖ୍ୟାତ ପ୍ରାଣୀତତ୍ତ୍ୱବିଦ୍ ଡକ୍ଟର ଏଫ୍. ଏଚ୍. ଏ. ମାର୍ଶାଲ୍ ମୋର ଟ୍ୟୁଟର୍ ଥିଲେ ଏବଂ ଉଦ୍ଭିଦ ବିଜ୍ଞାନରେ ମୋର ତତ୍ତ୍ୱାବଧାରକ ଥିଲେ ଅଧ୍ୟାପକ ଏଫ୍. ଟି. ବ୍ରୁକ୍‌ସ୍, ଏଫ୍. ଆର୍. ଏସ୍. । ବେଳେବେଳେ ଟ୍ୟୁଟରମାନେ ତାଙ୍କ ମାର୍ଫତରେ ଥିବା ଛାତ୍ରମାନଙ୍କୁ ଚା'ପାନ ବା ମଧ୍ୟାହ୍ନଭୋଜନପାଇଁ ନିମନ୍ତ୍ରଣ କରନ୍ତି । ମୋ ଟ୍ୟୁଟର୍‌ଙ୍କ ସହିତ ମଧ୍ୟାହ୍ନଭୋଜନ କରିବାର ଏକ କାହାଣୀ ଏଠାରେ ଉଲ୍ଲେଖ ନ କରି ମୁଁ ରହି ପାରୁନାହିଁ । ଡକ୍ଟର ମାର୍ଶାଲ ଜଣେ ଅବିବାହିତ ବ୍ୟକ୍ତି ଥିଲେ ଏବଂ କଲେଜରେ ଥିବା ତାଙ୍କ ବାସସ୍ଥାନକୁ ମୋତେ ମଧ୍ୟାହ୍ନଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । ଖାଇବା ପୂର୍ବରୁ ମୋତେ ସେ ଶାମ୍ପେନ (ଇଉରୋପ୍ ଦେଶରେ ଉଦ୍ଦାମ ଢଙ୍ଗରେ ମଦ୍ୟ) ଯାଚିବାବେଳେ ମୁଁ ମନା କରି କହିଲି, "ମୁଁ ମଦ ଖାଏ ନାହିଁ ।" ଖାଇବା ପରେ ସେ ମୋତେ ସିଗାରେଟ ଯାଚିଲେ । ମୁଁ କହିଲି, "ମୁଁ ଧୂମ୍ରପାନ କରେ ନାହିଁ ।" ସେ ଥଟ୍ଟାରେ କହିଲେ, "ତାହାହେଲେ ତୁମେ ଜଣେ ନିଷ୍ପାପ ପଶୁ ।"

## ରେଭେନ୍‌ସା କଲେଜ ଓ ଟ୍ୟୁଟର୍ ପ୍ରଥା

ଏପରି ଟ୍ୟୁଟରମାନଙ୍କ ବ୍ୟବସ୍ଥା ବାସ୍ତବିକ ଏକ ଭଲ ପ୍ରଥା; କାରଣ ଏହଦ୍ୱାରା ଶିକ୍ଷକ ଓ ଛାତ୍ରମାନେ ପରସ୍ପରର ନିକଟ ସମ୍ପର୍କରେ ଆସିପାରୁଥାନ୍ତି । ଆମ କଲେଜରେ ଯେଉଁଭଳି ସବୁ ଟ୍ୟୁଟୋରିଆଲ୍ ଶ୍ରେଣୀର ବ୍ୟବସ୍ଥା ଅଛି, ଏହା ତା'ଠାରୁ ଭିନ୍ନ । ମୁଁ ଯେତେବେଳେ ରେଭେନ୍‌ସା କଲେଜରେ ଥିଲି, ଡକ୍ଟର ବାବା କର୍ତ୍ତାରସିଂ ଯେ କି କେମ୍ବ୍ରିଜରେ ଥିଲେ, ସେ ଓ ମୁଁ କେମ୍ବ୍ରିଜର ଟ୍ୟୁଟରିଆଲ୍ ପ୍ରଣାଳୀ ଚଳାଇବାପାଇଁ ଚେଷ୍ଟାକଲୁ । ଆଗେ ଛାତ୍ରମାନଙ୍କୁ ଏକ ସମବିଭାଜକ ପ୍ରଣାଳୀରେ (Vertical dividing line) କେତେଗୁଡ଼ିଏ ଗୋଷ୍ଠୀରେ ବିଭକ୍ତ କଲୁ । ଯେଉଁଥିରେ ତଳ ଓ ଉପର ଶ୍ରେଣୀର ଛାତ୍ର ଏକାଠି ରହିଲେ ଏବଂ ପ୍ରତ୍ୟେକ ଗୋଷ୍ଠୀକୁ ଜଣେ ଜଣେ ଅଧ୍ୟାପକଙ୍କ ଦାୟିତ୍ୱରେ ରଖାଗଲା । ଏହି ଅଧ୍ୟାପକ ଛାତ୍ରଙ୍କୁ ସପ୍ତାହରେ ଥରେ ସାକ୍ଷାତ

କରି । ସେ ତାଙ୍କର ସୁବିଧା ଅସୁବିଧା ବୁଝିବା ଦାୟିତ୍ୱରେ ରହନ୍ତି । ସେପରିକି ଛାତ୍ରମାନେ ରହୁଥିବା ବସାଘରକୁ ଯାଇ ସେମାନଙ୍କ ଦୋଷଗୁଣ ବୁଝିବାପାଇଁ ଅଧ୍ୟାପକମାନଙ୍କୁ ଅନୁରୋଧ କରାଗଲା । ଏହି ନୋଟିସ ଅଧ୍ୟାପକମାନଙ୍କର ଆଗ୍ରହ ଥିବା ପର୍ଯ୍ୟନ୍ତ ଭଲ ଭାବରେ ଚାଲିଲା । ବର୍ତ୍ତମାନ ଏହା କପରି ଚାଲିଛି କହିପାରିବି ନାହିଁ ।

କେମ୍ବ୍ରିଜର ବିଭିନ୍ନ କଲେଜ ଛାତ୍ରମାନଙ୍କୁ ଯୋଗ୍ୟତା ବୃତ୍ତି ଦେଉଥିଲେ । ଏହି ବୃତ୍ତିକୁ ସ୍କଲରସିପ୍ ଓ ବର୍ସରସିପ୍ (Bursarship) କୁହାଯାଏ । ସାଧାରଣତଃ ପ୍ରଥମ ଶ୍ରେଣୀର ଛାତ୍ରମାନେ ସ୍କଲରସିପ୍ ପାଉଥିଲେ । ସ୍କଲରଙ୍କ କର୍ତ୍ତବ୍ୟ ମଧ୍ୟରେ ଗୋଟିଏ ଥିଲା—କଲେଜ ହଲରେ ରାତ୍ରି ଭୋଜନର ଆରମ୍ଭରେ ଲାଟିନ୍ ଭାଷାରେ ପ୍ରାର୍ଥନା ପାଠ କରିବା । ସ୍କଲର ଭାବରେ ବଛା ହେବାପରେ ଛାତ୍ରଙ୍କୁ ଲାଟିନ୍‌ରେ ଶପଥ ପାଠ କରିବାକୁ ହେଉଥିଲା । ମୁଁ ଯେତେବେଳେ ଜଣେ ସ୍କଲର ଭାବରେ ନିର୍ବାଚିତ ହେଲି, ଡିନ୍‌ଙ୍କ ପାଖରେ ଲାଟିନ୍‌ରେ ମୋତେ ଶପଥପାଠ କରିବାକୁ ହୋଇଥିଲା, ଯଦିଓ ମୋର ଲାଟିନ୍ ଜ୍ଞାନ ଆଦୌ ନ ଥିଲା । ଲାଟିନ୍ ଶବ୍ଦଗୁଡିକ ଭଲଭାବରେ ଉଚ୍ଚାରଣ କରିବା ପାଇଁ ମୋତେ ବାରମ୍ବାର ଆବୃତ୍ତି କରିବାକୁ ହୋଇଥିଲା । ମୁଁ ଭାରତ ସରକାରଙ୍କଠାରୁ ବୃତ୍ତି ପାଉଥିବାଯୋଗୁଁ ମୋର ସ୍କଲର ପଦବୀ ଅବୈତନିକ ଥିଲା ।

ଅଧିକାଂଶ ଛାତ୍ର ବିଶ୍ୱବିଦ୍ୟାଳୟରେ ନିଜ ନିଜ ଶ୍ରେଣୀରେ ଯୋଗ ଦେଉଥିଲେ । ବେଳେବେଳେ କୌଣସି ବିଷୟରେ ଫେଲୋମାନଙ୍କ ମଧ୍ୟରେ ବିଶେଷଜ୍ଞ ଥିଲେ କଲେଜରେ ବିଶେଷ କ୍ଲାସ ହେଉଥିଲା । ଆମ କଲେଜରେ ଅଙ୍କଶାସ୍ତ୍ର ଓ ପ୍ରାଚ୍ୟଭାଷାରେ ଅଧ୍ୟାପକମାନେ ଥିଲେ । ଆମର ସିନିଅର ଟ୍ୟୁଟର ଜଣେ ଭାଷାବିତ୍ ଥିଲେ ଏବଂ ସେ ହିବ୍ରୁ ଭାଷା ଓ ସିରିଆକ ଭାଷା ଜାଣିଥିଲେ ।

## ଶିପ୍‌ଲେ ଓ ସେଣ୍ଟାନ

ଟ୍ୟୁଟରମାନେ ତ ବେଳେବେଳେ ନିମନ୍ତ୍ରଣ କରୁଥିଲେ, ମାଷ୍ଟର ଓ ଡିନ୍ ମଧ୍ୟ ପୃଥକ୍ ପୃଥକ୍ ଭାବରେ ସପ୍ତାହର କୌଣସି ଦିନରେ ଛାତ୍ରମାନଙ୍କୁ ନିମନ୍ତ୍ରଣ କରୁଥିଲେ । ସେଦିନ ସନ୍ଧ୍ୟାରେ ଯେକୌଣସି ସମୟରେ ଛାତ୍ରମାନେ ସେମାନଙ୍କ ଘରକୁ ଯାଇ ଚା, କଫି କିମ୍ବା ଜଳଖିଆ ଖାଇବାର ନିମନ୍ତ୍ରଣ ରହୁଥିଲା ।

ମୋ' ସମୟରେ ବିଖ୍ୟାତ ପ୍ରାଣିତତ୍ତ୍ୱବିତ୍ ସାର୍ ଆର୍ଥର୍ ଶିପ୍‌ଲେ, ଏଫ. ଆର୍. ଏସ୍. ଆମ କଲେଜର ମାଷ୍ଟର ଥିଲେ । ମାଷ୍ଟରମାନେ ପଦଅନୁଯାୟୀ କୁଳପତି

ଡକ୍ଟର ସାର୍ କନ୍ଦରହ୍ମଙ୍କ ନାମ କହିବା ପାଇଁ ମୋତେ ଧଗୃରିବାରୁ ମୁଁ ତାହା ଉଚ୍ଚାରଣ କଲି ଏବଂ ସେ ତାହା ଧରିପାରିଲେ । ତା'ପରେ ସେ କହିଲେ ତୁମେ କହିବାରୁ ତାହା ଜଣାଗଲା କିନ୍ତୁ ମୋ କହିବାବେଳେ ତାହା କେମେଜିଲ୍ (Pzemezyl) ବୋଲି ଶୁଣାଯାଉଥିଲା । କେମେଜିଲ୍ ପୋଲଣ୍ଡରେ ଥିବା ଏକ ସ୍ଥାନର ନାମ । ସେତେବେଳେ ସେଠାରେ ଯୁଦ୍ଧ ଲାଗିଥିଲା ଏବଂ ଖବରକାଗଜରେ ସେ ନାଆଁଟା ଖୁବ୍ ପରିଚିତ ହୋଇଯାଇଥିଲା ।

କେମ୍ବ୍ରିଜରେ ରହିବା ସମ୍ପର୍କୀୟ ନିୟମାବଳୀ ଖୁବ୍ କଠୋରଭାବରେ ଅନୁସରଣ କରାଯାଉଥିଲା । ଶିକ୍ଷାବର୍ଷ ତିନି ଭାଗରେ ବିଭକ୍ତ କରାଯାଇ ଥିଲା, ଯଥା—ମାଇକେଲ୍ମାସ, ଲେଣ୍ଟ୍ ଓ ଇଷ୍ଟର୍ । ମାଇକେଲ୍ମାସ ଅକ୍ଟୋବର ମାସର ଦ୍ୱିତୀୟ ମଙ୍ଗଳବାର ଦିନ ଆରମ୍ଭ ହୁଏ । ତା'ପରେ ଲେଣ୍ଟ୍ ଓ ତା'ପରେ ଇଷ୍ଟର୍ । ପ୍ରତ୍ୟେକ ଛାତ୍ର ଡିଗ୍ରୀ ପାଇବାର ଯୋଗ୍ୟ ବୋଲି ବିବେଚିତ ହେବାକୁ ହେଲେ ଏହାପରେ ନ'ଟି ଟର୍ମ କଲେଜରେ କିମ୍ବା ଲାଇସେନ୍ସପ୍ରାପ୍ତ ବାସଘରେ ରହିବାକୁ ପଡୁଥିଲା । ତେଣୁ ଏହି ଟର୍ମରୁ ବେଶି କାହାକୁ ରିହାତି ମିଳୁ ନ ଥିଲା । ଭାରତୀୟ ଛାତ୍ର କ୍ଷେତ୍ରରେ ଏ ରିହାତି କେବଳ ଗ୍ରାଜୁଏଟ୍ ଓ ପ୍ରଥମ ଶ୍ରେଣୀର ଇଣ୍ଟରମିଡିଏଟ୍ ଛାତ୍ରଙ୍କୁ ମିଳୁଥିଲା । ଏପରି ରିହାତି ପାଇବାକୁ ହେଲେ ଛାତ୍ରଙ୍କର କଲେଜ ଶିକ୍ଷାର କୌଣସି ସ୍ତରରେ ଗୋଟିଏ ପ୍ରାଚୀନ ଭାଷା ପାଠ୍ୟ ବିଷୟ ଥିବା ଆବଶ୍ୟକ । ମୋତେ ଏ ରିହାତି ମିଳିଥିଲା, କାରଣ କଲିକତା ବିଶ୍ୱବିଦ୍ୟାଳୟରୁ ମୁଁ ବି. ଏମ୍ ଏ. ପାସ କରିଥିଲି ଏବଂ ଏଣ୍ଟ୍ରାନ୍ସ ପରୀକ୍ଷାରେ ମୋର ସଂସ୍କୃତ ଥିଲା ।

## ୬୦ ଦିନ ରହିବାକୁ ହେବ

ନିୟମ ପାଳନ କରିବାକୁ ହେଲେ ପ୍ରତ୍ୟେକ ଟର୍ମରେ କମ୍ ସେ କମ୍ ୬୦ ଦିନ କେମ୍ବ୍ରିଜରେ ରହିବାକୁ ହେଉଥିଲା । ଏଥିରୁ କମ୍ ହେଲେ କାହାରିକୁ କ୍ଷମା ଦିଆଯାଉ ନ ଥିଲା । ମୋର ମନେଅଛି, କେମ୍ବ୍ରିଜରେ ମୋର ଜଣେ ସମକାଳୀନ ଛାତ୍ର ଆସାମର ଚନ୍ଦ୍ରନାଥ ଶର୍ମା ଥରେ ବୋର୍ଡ଼ିଂ ଛାଡ଼ି ଚାଲିଯାଇଥିଲେ । ଦିନ ଦେଖିଲେ, ତାଙ୍କର ୬୦ ଦିନ ପୂରଣ କରିବା ପାଇଁ ଗୋଟିଏ ଦିନ କମ୍ ପଡୁଛି । ତାଙ୍କ ପାଇଁ ସଙ୍ଗେ ସଙ୍ଗେ ତାର କରାଗଲା ଏବଂ ସେ ଆସି କଲେଜରେ ଆଉ ଗୋଟିଏ ରାତି ଆସି ଶୋଇବାକୁ ହେଲା । ଅର୍ଥାତ୍ ରାତି ବାରଟା ପୂର୍ବରୁ କଲେଜରେ ସେ ଅଛନ୍ତି ବୋଲି ଜଣାଇବା ଦରକାର । ବାରଟା ପରେ ଭିତରେ ଆସିଲେ କ୍ଷତି ନାହିଁ । ସେ ଯଦି ଆସି ପହଞ୍ଚି ନ

ଥାନ୍ତି, ଗୋଟିଏ ଟର୍ମ ତାଙ୍କୁ କ୍ଷତ ସହିବାକୁ ହୋଇଥାଆନ୍ତା ଓ ଡିଗ୍ରୀ ପାଇବାପାଇଁ ଯୋଗ୍ୟତା ଅର୍ଜନ ନିମନ୍ତେ ତାଙ୍କୁ ଆହୁରି ୯ ମାସ କେମ୍ବ୍ରିଜରେ ରହିବାକୁ ହୋଇଥାଆନ୍ତା । ମିଷ୍ଟର ମଜିଦ୍ ବର୍ଣ୍ଣିଆନ୍ ସିଭିଲ୍ ସର୍ଭିସ୍‌ରେ ଯୋଗ ଦେଇଥିଲେ । ପରେ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜର ଶାସକଭାବରେ ନିଯୁକ୍ତ ହୋଇଥିଲେ ଏବଂ ଇଙ୍ଗଲଣ୍ଡରେ ଭାରତୀୟ ହାଇକମିସନର୍ ଥିଲେ । ସେ କ୍ରାଇଷ୍ଟ'ସ୍ କଲେଜକୁ ଆସିଥିଲେ, କାରଣ ତାଙ୍କର ପିତା କ୍ରାଇଷ୍ଟ'ସ୍ କଲେଜର ଜଣେ ପୁରାତନ ଛାତ୍ର ଥିଲେ । କଲେଜ ସବୁ ପୁରାତନ ଛାତ୍ରଙ୍କର ପୁଅମାନଙ୍କୁ ଅଧିକ ସୁବିଧା ଦେଉଥିଲେ । ଯେତେବେଳେ ମୋର ଜ୍ୟେଷ୍ଠ ପୁତ୍ର ପ୍ରତାପ-ରୁଦ୍ର ଫ୍ରାନ୍ସ ଯାଇଥିଲା ଏବଂ ସେ କେମ୍ବ୍ରିଜରେ ପଢୁ ବୋଲି ମୁଁ ଇଚ୍ଛା ପ୍ରକାଶ କଲି, ମୋର ପୁରୁଣା କଲେଜରେ ସ୍ଥାନ ପାଇବା ଭାରି ସହଜ ଥିଲା । ସେ ଗଲା ନାହିଁ । ତାହା ଅବଶ୍ୟ ଏକ ଭିନ୍ନ କଥା ।

## ନାଳନ୍ଦୀୟ ବିଶ୍ୱବିଦ୍ୟାଳୟ

ଶିକ୍ଷା କ୍ଷେତ୍ରରେ ବିଶ୍ୱବିଦ୍ୟାଳୟର ସଂଗଠନ ବ୍ୟବସ୍ଥାର ଏକ ସଂକ୍ଷିପ୍ତ ବିବରଣୀ ଦେବା ସମୀଚୀନ ହେବ । ଏହା ଜଣାଶୁଣା କଥା ଯେ, କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ଏକ ଶିକ୍ଷାଦାନକାରୀ ବା ଆବାସୀ (ନାଳନ୍ଦୀୟ Residential) ବିଶ୍ୱବିଦ୍ୟାଳୟ । ସମସ୍ତ ପ୍ରକାର ଶୃଙ୍ଖଳା ବ୍ୟବସ୍ଥା ଏଥିରେ କରାଯାଇଥାଏ । ପ୍ରତ୍ୟେକ ବିଭାଗରେ ଜଣେ ପ୍ରଧାନ ଅଧ୍ୟାପକ (Professor) ଥା'ନ୍ତି । ଏକ ବା ତତୋଽଧିକ ରିଡର୍ ଏବଂ ଆବ-ଶ୍ୟକ ସଂଖ୍ୟକ ଅଧ୍ୟାପକ (Lecturers) ଥା'ନ୍ତି । କଲେଜ ଟ୍ୟୁଟର୍‌ମାନଙ୍କ ନିର୍ଦ୍ଦେଶ ଅନୁଯାୟୀ ସବୁ ଛାତ୍ର ଅଧ୍ୟାପନା ସଂପର୍କୀୟ ବକ୍ତୃତାମାନଙ୍କରେ ଯୋଗ ଦିଅନ୍ତି । ଭାରତରେ ଯେପରି ଉପସ୍ଥାନ ନିଆଯାଏ, ସେଠାରେ ତାହା ହୁଏ ନାହିଁ । ପାଠ୍ୟବର୍ଷର ଆରମ୍ଭରେ ବକ୍ତୃତା ଗୃହରେ ଛାତ୍ରମାନଙ୍କର ଧାର୍ଯ୍ୟ ପାଇଁ ଟିକେଟ କାର୍ଡ ପଠାଯାଏ, ଆଉ ଉପସ୍ଥାନ ନିଆଯାଏ ନାହିଁ । ଟ୍ୟୁଟର୍‌ମାନେ ଏଥିପାଇଁ ଦାୟୀ ହୁଅନ୍ତି । ଶତକଡ଼ା ହାରାହାରି ଉପସ୍ଥାନ ଗ୍ରହଣ କରାଯାଏ ନାହିଁ । ପ୍ରତ୍ୟେକ ଟର୍ମରେ କଲେଜରେ କେତେ-ଦିନ ରହିବାକୁ ହେବ, ତାହା ନିର୍ଦ୍ଦିଷ୍ଟ କରାଯାଇଥିବାଯୋଗୁଁ ଉପସ୍ଥାନ ହିସାବ ଦରକାର ପଡ଼େ ନାହିଁ । ପ୍ରତ୍ୟେକ ଛାତ୍ରଙ୍କୁ ସପ୍ତାହରେ ଥରେ ଥରେ ଟ୍ୟୁଟର୍‌ଙ୍କୁ ଦେଖା କରିବାକୁ ପଡ଼େ ଏବଂ ତାଙ୍କର ନିର୍ଦ୍ଦେଶ ଅନୁଯାୟୀ କେଉଁ ସବୁ ବକ୍ତୃତାରେ ଛାତ୍ର ଉପସ୍ଥିତ ଥିଲେ, ତାହା ବୁଝାଇବାକୁ ପଡ଼େ ।

କେତେକ କଲେଜ ଆନ୍ତର୍କଲେଜ ବକ୍ତୃତାବଳୀର ବ୍ୟବସ୍ଥା କରିଥାଆନ୍ତି ଏବଂ ପ୍ରାକ୍ଟିକାଲ୍ କାର୍ଯ୍ୟପାଇଁ ସେମାନଙ୍କ ନିଜ ନିଜର ପରୀକ୍ଷାଗାରର ବ୍ୟବସ୍ଥା କରିଥାଆନ୍ତି । ଅନ୍ୟ କଲେଜର ଛାତ୍ରମାନେ ଏସବୁ ପରୀକ୍ଷାଗାରରେ କାର୍ଯ୍ୟ କରିବାରେ ବାଧା ନ ଥାଏ । ଅବଶ୍ୟ ବିଶ୍ୱବିଦ୍ୟାଳୟ ପରୀକ୍ଷାଗାରମାନଙ୍କରେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଏଥିରେ କାର୍ଯ୍ୟ କରିବାକୁ ହେଲେ ଟ୍ୟୁଟର୍‌ମାନଙ୍କ ପରାମର୍ଶ ନେବା ଦରକାର ହୁଏ ।

କଲେଜ ଓ ଶ୍ରେଣୀର ବାହାରେ ଶୃଙ୍ଖଳା ରକ୍ଷା ସମ୍ପର୍କରେ ବିଶ୍ୱବିଦ୍ୟାଳୟର ବ୍ୟବସ୍ଥା ହେଲା, କେତେ ଜଣ ଫେଲୋଙ୍କୁ ପ୍ରକ୍ଟର୍‌ରୂପେ ନିଯୁକ୍ତ ଦେବା । ପ୍ରକ୍ଟର୍‌ମାନଙ୍କର କର୍ତ୍ତବ୍ୟ ହେଉଛି ବିଶ୍ୱବିଦ୍ୟାଳୟ ଛାତ୍ରମାନଙ୍କ ମଧ୍ୟରେ, ବିଶେଷ ଭାବରେ ସନ୍ଧ୍ୟା ସମୟରେ ଶୃଙ୍ଖଳା ରକ୍ଷା କରିବା । ସନ୍ଧ୍ୟା ପରେ (ସାଧାରଣତଃ ସନ୍ଧ୍ୟା ୬ଘଣ୍ଟା ପରେ) ବିଶ୍ୱବିଦ୍ୟାଳୟରେ ରହୁଥିବା ପ୍ରତ୍ୟେକ ଗ୍ରାଜୁଏଟ୍ କିମ୍ବା ଅଣ୍ଡର୍‌ଗ୍ରାଜୁଏଟ୍ କଲେଜ ବାହାରକୁ କିମ୍ବା ବସା ବାହାରକୁ ଯିବାକୁ ହେଲେ ନିଜ ନିଜର ଗାଉନ୍ (Gown) ପିନ୍ଧି ଯିବାକୁ ହେଉଥିଲା । ଅଣ୍ଡର୍‌ଗ୍ରାଜୁଏଟ୍‌ମାନେ ସେମାନଙ୍କ କଲେଜପାଇଁ ନିର୍ଦ୍ଦିଷ୍ଟ ପୋଷାକ ପିନ୍ଧୁଥିଲେ ଏବଂ ଗ୍ରାଜୁଏଟ୍‌ମାନେ ବି. ଏ. ଗାଉନ୍ ପରିଧାନ କରୁଥିଲେ ।

## ବୁଲ୍ ଡଗ୍

ପ୍ରକ୍ଟର୍‌ମାନେ ବାହାରକୁ ଗଲାବେଳେ ଦୁଇ ଜଣ ବ୍ୟାୟାମଦକ୍ଷ ସବଳ ଅନୁଚରଙ୍କ ସହିତ ଯାଉଥିଲେ । ଏହି ଅନୁଚରଙ୍କୁ "ବୁଲ୍ ଡଗ୍" ନାମ ଦିଆଯାଇଥିଲା । ପ୍ରକ୍ଟର୍ କେବେ ଛାତ୍ରଙ୍କୁ ତାଙ୍କର ନାମ ଓ କଲେଜର ନାମ ପଚାରୁଥିଲେ । ଯଦି ସେ ଜଣେ ଅଣ୍ଡର୍‌ଗ୍ରାଜୁଏଟ୍ ହୋଇ ବିନା-ଗାଉନ୍‌ରେ ଯାଉଥିବା ସେ ଦେଖୁଥିଲେ ସଙ୍ଗେ ସଙ୍ଗେ ଜରିମାନା କରିଦେଉଥିଲେ । ମୋ ସମୟରେ ଅଣ୍ଡର୍‌ଗ୍ରାଜୁଏଟ୍‌ମାନେ ଛ' ସିଲିଂ ଛ' ପେନ୍ସ୍ କରି ଜରିମାନା ଦେଉଥିଲେ । ଗ୍ରାଜୁଏଟ୍‌ମାନେ ତେର ସିଲିଂ ଚାରି ପେନ୍ସ୍ ଜରିମାନା ଦେଉଥିଲେ । କଲେଜ ହତା ଭିତରେ ପ୍ରକ୍ଟର୍‌ଙ୍କ କ୍ଷମତା ଖଟୁ ନ ଥିଲା । ତେଣୁ ବେଳେବେଳେ ଅପରାଧୀମାନେ କଲେଜ ଗେଟ୍ ଭିତରକୁ ଦୌଡ଼ି ପଳାଉଥିଲେ । ଏ କ୍ଷେତ୍ରରେ "ବୁଲ୍ ଡଗ୍"ମାନଙ୍କୁ ଲଗାଇ ଦିଆଯାଉଥିଲା । ସେମାନେ ଏପରି ଛାତ୍ରଙ୍କୁ ଧରିଆଣି ପ୍ରକ୍ଟର୍‌ଙ୍କ ପାଖରେ ପହଞ୍ଚାଉଥିଲେ । ଯଦି ଛାତ୍ରମାନେ କଲେଜ ଗେଟ୍ ଭିତରେ ପଶିଯିବାରେ ସଫଳ ହେଉଥିଲେ, ତାହାହେଲେ ଆଉ 'ବୁଲ୍ ଡଗ୍'ମାନେ ଭିତରକୁ ଯାଇପାରୁ ନ ଥିଲେ । ଥରେ ପରୀକ୍ଷାଗାରରେ ମୋ'ର

ବିଳମ୍ବ ହୋଇଗଲା ଏବଂ ମୋ ବସା ଘରକୁ ମୁଁ ଡେରିରେ ଫେରୁଥିଲି । ଦୁର୍ଭାଗ୍ୟର ବିଷୟ ମୁଁ ବିନା-ଗାଉନ୍‌ରେ ଆସୁଥିବାର ଦେଖି ପ୍ରକ୍ଟର୍ ମୋତେ ଧରି ପକାଇଲେ । ମୁଁ ତାଙ୍କୁ ବୁଝାଇବାପାଇଁ ଚେଷ୍ଟା କଲି ଯେ ମୁଁ ଦିନବେଳେ ପରୀକ୍ଷାଗାରକୁ ଯାଇଥିଲି । ତେଣୁ ମୋତେ ଗାଉନ୍ ପିନ୍ଧିବାକୁ ସମୟ ନ ଥିଲା । କିନ୍ତୁ ଏସବୁ କୈଫିୟତ୍ତର କୌଣସି ମୂଲ୍ୟ ରହିଲା ନାହିଁ । ସେମାନେ ନାମ ଓ କଲେଜ ନାମ ଲେଖିନେଲେ । ତା' ପରଦିନ ସକାଳୁ ଜଣେ "ବୁଲ୍‌ଡଗ୍" ମୋ ବସା ଘରେ ୧୩ ସିଲିଂ ୪ ପେନ୍‌ସର ବିଲ୍ ନେଇ ଉପସ୍ଥିତ । ପଇସା ନେଇ ଫେରିଗଲା । ଏମ. ଏ. ହୋଇଗଲେ ଏସବୁ କଟକଣା ନାହିଁ । ଯଦି ଜଣେ ଅଣ୍ଡର୍‌ଗ୍ରାଜୁଏଟ୍ (ସ୍ନାତକପୂର୍ବ ଛାତ୍ର) ଗାଉନ୍ ପିନ୍ଧିଥିବା ବେଳେ ଧୂମ୍ରପାନ କରୁଥିବାର ପ୍ରକ୍ଟର୍ ଦେଖନ୍ତି, ତାହାହେଲେ ତାକୁ ଜରିମାନା ହୁଏ । ଗାଉନ୍ ପିନ୍ଧି ଯଦି କୌଣସି ଛାତ୍ର କୌଣସି ଯୁବତୀ ସଙ୍ଗରେ ଯାଉଥିବ; ତେବେ ପ୍ରକ୍ଟର୍‌ଙ୍କର ଅଧିକାର ଅଛି ଯେ ସେ ଛାତ୍ରକୁ ଉକ୍ତ ଯୁବତୀଙ୍କୁ ବିଧିମତେ-ପରିଚୟ କରାଇବାକୁ ଦାବି କରିପାରନ୍ତି । ଯଦି ପ୍ରକ୍ଟର୍ ଏଥିରେ ସନ୍ତୁଷ୍ଟ ନ ହୁଅନ୍ତି, ତେବେ ଛାତ୍ରକୁ ଜରିମାନା କରିପାରନ୍ତି । ମୁଁ କେମ୍ବ୍ରିଜରେ ସାତ ବର୍ଷ ଥିବାକାଳରେ ପ୍ରକ୍ଟର୍ ପ୍ରଥା ବିଷୟରେ କାହାଠାରୁ କୌଣସି ଆପତ୍ତି ବା ଅଭିଯୋଗ ହେବାର ଶୁଣିନାହିଁ ।

ଭାରତବର୍ଷରେ ଯେତେବେଳେ ଆବାସିକ (Residential) ବିଶ୍ୱବିଦ୍ୟାଳୟମାନ ସ୍ଥାପିତ ହୋଇଲା, ଯଥା—ବନାରସ, ଏଲାହାବାଦ, ଲକ୍ଷ୍ନୌ ଓ ଢାକା ସେତେବେଳେ ପ୍ରକ୍ଟର୍ ପ୍ରଥା ସ୍ଥାପନ କରାଗଲା । କିନ୍ତୁ ଏ ପ୍ରଥା କେମ୍ବ୍ରିଜପରି କାର୍ଯ୍ୟକାରୀ ହେଲା ନାହିଁ । ଏବେ ଖବର କାଗଜରେ ବାହାରିଥିଲା ଯେ କୌଣସି ଆବାସିକ ବିଶ୍ୱବିଦ୍ୟାଳୟରେ ଛାତ୍ରମାନେ ପ୍ରକ୍ଟର୍‌ଙ୍କୁ ଘେରାଉ କଲେ । କାରଣ ପ୍ରକ୍ଟର୍‌ଙ୍କର କୌଣସି ଆଦେଶକୁ ସେମାନେ ପସନ୍ଦ କରି ନ ଥିଲେ । ପ୍ରକ୍ଟର୍ ପ୍ରଥାର ରେଭେନ୍‌ସା କଲେଜ ଟ୍ୟୁଟର୍ ପ୍ରଥାର ଅବସ୍ଥା ଘଟିନ । ଆମ ଦେଶକୁ ଆଚାରଗ୍ରସ୍ତ (custom-bound) କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ କୌଣସି ନୂତନ ପଦ୍ଧତି ପୁନଃ ପୁନଃ ଚେଷ୍ଟା ନ କଲେ ସଫଳ ହେବାର ସମ୍ଭାବନା କମ୍ । □

# ପ୍ରଥମ ମହାଯୁଦ୍ଧ ଓ
# କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ

ମୁଁ ଯେଉଁ ବିଶ୍ୱବିଦ୍ୟାଳୟର 'ଉପରକୁ ଉଠିଲି' ଏଇ ହେଉଛି ତାର ସଂକ୍ଷିପ୍ତ ପରିଚୟ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ନିଜ ପାଇଁ ଏକ ସମ୍ମାନିତ ସ୍ଥାନ ଦାବି କରିଆସୁଥିଲା । ଯେଉଁମାନେ ସେଠାକୁ ପଢ଼ିବାକୁ ଯାଆନ୍ତି; ସେମାନେ 'ଉପରକୁ ଉଠୁଛନ୍ତି' (go up) ବୋଲି କୁହାଯାଏ । ଯଦି କେହି ସେଠାରୁ ବହିଷ୍କୃତ ହୁଅନ୍ତି, ତାହେଲେ 'ତାଙ୍କୁ ତଳକୁ ପଠାଇ ଦିଆଗଲା' (sent down) ବୋଲି କୁହାଯାଏ । ମନକୁ ମନ ଯଦି କେହି ଚାଲି ଯାଆନ୍ତି ତାହେଲେ ବି ସେ ତଳକୁ ଚାଲିଗଲେ (go down) ବୋଲି କୁହାଯାଉଥିଲା । ଯେପରିକି କୌଣସି ଏକ ଉଚ୍ଚ ସ୍ଥାନରୁ ସେ ତଳକୁ ଖସିଗଲେ ।

## ପ୍ରଥମ ମହାଯୁଦ୍ଧ

କେମ୍ବ୍ରିଜରେ ମୁଁ ସାତ ବର୍ଷ ପାଖାପାଖି ରହିଲି । ଏହି ସମୟ ମଧ୍ୟରେ ବହୁ ଘଟଣା ଘଟିଯାଇଛି ଓ ବହୁ ଲୋକଙ୍କ ସଂପର୍କରେ ମୁଁ ଆସିଛି । ଏଠାରେ ସେ ବିଷୟରେ କିଛି ଉଲ୍ଲେଖ କରିବା ମୁଁ ଉଚିତ ମନେକରୁଛି । ମୁଁ ପୂର୍ବରୁ କହିଛି ଯେ ୧୯୧୪ ମସିହାରେ ମୋର କେମ୍ବ୍ରିଜରେ ପହଞ୍ଚିବାବେଳକୁ ପ୍ରଥମ ମହାଯୁଦ୍ଧ ଆରମ୍ଭ ହୋଇଯାଇଥିଲା । ପ୍ରଥମ ଅବସ୍ଥାରେ କଲେଜରେ ସ୍ଥାନ ଭର୍ତ୍ତି ହୋଇଯାଇଥିଲା । କିନ୍ତୁ ପରେ ସୈନ୍ୟବାହିନୀରେ ଯୋଗଦେବାପାଇଁ ଯେତେବେଳେ ଯୁବକମାନଙ୍କୁ ନିବେଦନ କରାଗଲା, ସେତେବେଳେ ବହୁ ଯୁବକ କଲେଜ ଛାଡ଼ି ଚାଲିଗଲେ । ଶେଷରେ ବାଧ୍ୟତାମୂଳକ ସାମରିକ ନିଯୁକ୍ତି ବ୍ୟବସ୍ଥା (compulsory military service) ପ୍ରବର୍ତ୍ତିତ କରାଗଲା । ତା' ଫଳରେ ଏକ ବର୍ଷ ଓ ତା'ଠାରୁ ଊର୍ଦ୍ଧ୍ୱ ବୟସର ଯୁବକମାନେ ବିଶ୍ୱବିଦ୍ୟାଳୟ ଛାଡ଼ି ସୈନ୍ୟବାହିନୀରେ ଯୋଗଦେଲେ । କେବଳ ଡାକ୍ତରୀ ରିପୋର୍ଟରେ ଯେଉଁମାନେ ଅକ୍ଷମ ଜଣାଗଲେ ଓ କ୍ୱେକର୍‌ମାନଙ୍କ (quaker) ପରି ଯେଉଁମାନେ ନୀତି ବା ବିବେକର ତାଡ଼ନାରେ ଏହି ବ୍ୟବସ୍ଥାର ବିରୋଧ କରୁଥିଲେ ସେହିମାନେ ରହିଗଲେ । ଗ୍ରୀଷ୍ମ ଦିନର ଏକ ଜନଗଣନା

(census) କରାଯାଇଥିଲା । ଯଦି ସୈନ୍ୟବାହିନୀରେ ଭର୍ତ୍ତି କରିବା ଦାୟିତ୍ୱରେ ଥିବା ଅଫିସର୍ ଦେଖୁଥିଲେ, କେହି ବ୍ରିଟିଶ୍ ଛାତ୍ର ସୈନ୍ୟବାହିନୀରେ ନାମ ଲେଖାଇ ନାହିଁ, ତା'ହେଲେ ସେ ତାଙ୍କୁ ଡକାଇ ପଠାଉଥିଲେ । ମୋର ଏକ ଘଟଣା ମନେ-ପଡ଼ୁଛି । ଆଫ୍ରିକାର ଜଣେ ନିଗ୍ରୋ ଛାତ୍ରର ନାମ ଥିଲା ଉଇଲ୍‌ସନ୍—ଏକ ଖ୍ରୀଷ୍ଟାନ ନାମ । ଅଫିସର୍ ତାକୁ ଡକାଇ ପଠାଇଲେ । ସେ ଯେତେବେଳେ ଅଫିସରଙ୍କ ଆଗରେ ଉପସ୍ଥିତ ହେଲା, ଅଫିସର୍ କହିଉଠିଲେ "ଓହୋ, ତୁମେ ଜଣେ ଆଫ୍ରିକାନ୍ ।" ଛାତ୍ରଜଣକ ରସିକତା କରି କହିଲା, "ମୁଁ କଣ ସେପରି ଦେଖା ଯାଉଛି କି ?"

## ଦୁଧ ଓ କଫି ସମାନ

ଶ୍ୱେତାଙ୍ଗ ଛାତ୍ରମାନଙ୍କର ସଂଖ୍ୟା କମିଯିବାରୁ ଭାରତ, ପଶ୍ଚିମଭାରତ ଦ୍ୱୀପପୁଞ୍ଜ, ଚୀନ ଓ ମଧ୍ୟପ୍ରାଚ୍ୟର ଛାତ୍ରମାନେ ବେଶି ଆଖିରେ ପଡ଼ିଲେ । କେମ୍ବ୍ରିଜ ପତ୍ରିକା (ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶିତ ହୁଏ ନାହିଁ)ରେ ଜଣେ କେହି ବିଶ୍ୱ-ବିଦ୍ୟାଳୟ ଜନସଂଖ୍ୟା ସମ୍ପର୍କରେ ଏକ କବିତା ଲେଖିଥିଲେ—ସମାନ ପରିମାଣରେ ଦୁଧ ମିଶିଲେ କଫିର ରଙ୍ଗ ଯାହାହୁଏ (as cafe an lait) ସେହି । ରଙ୍ଗ ମୋର ମନେ ପଡ଼ୁଛି, ଭାରତୀୟ ଛାତ୍ରମାନଙ୍କର ପରାମର୍ଶଦାତା ସେଣ୍ଟ୍ ଜନସ୍ କଲେଜର ମିଷ୍ଟର ବେନଅନ୍‌ସ୍‌ଙ୍କ ଦୃଷ୍ଟିକୁ ଆମେ ଏହା ଆଣିବାରୁ ସେ ତାହା ଗୋଟିଏ ହାସ୍ୟ-ରସର କବିତା ବୋଲି କହି ହସିଦେଲେ । ଥରେ ଭାରତୀୟ ଛାତ୍ରମାନଙ୍କ ମଧ୍ୟରୁ ଶ୍ରୀ କେ. ବି. ସେଠ (ପରେ ଆଇ. ଇ. ଏସ୍. ହୋଇଥିଲେ), ଭିଦେ (ପରେ ଆଇ. ସି. ଏସ୍.) କାମତାପ୍ରସାଦ (ପରେ ଆଇ. ଇ. ଏସ୍) ଓ ମୁଁ ମିଷ୍ଟର ବେନଅନ୍‌ସ୍‌ଙ୍କ ପାଖକୁ ଯାଇ ଯେ କୌଣସି କାର୍ଯ୍ୟରେ ସୈନ୍ୟବାହିନୀରେ ଆମକୁ ନିଯୁକ୍ତ କରିବାପାଇଁ ଅନୁରୋଧ କଲୁ । କିନ୍ତୁ ମିଷ୍ଟର ବେନଅନ୍‌ସ୍ ଆମକୁ ନିରୁତ୍ସାହିତ କରିଥିଲେ ଓ ଯେଉଁ ଉଦ୍ଦେଶ୍ୟରେ ଆମେମାନେ କେମ୍ବ୍ରିଜ ଆସିଛୁ, ସେହି ଉଦ୍ଦେଶ୍ୟ ବା ଅଧ୍ୟୟନରେ ମନୋନିବେଶ କରିବାପାଇଁ ଆମକୁ ପରାମର୍ଶ ଦେଇଥିଲେ ।

ଡକ୍ଟର ଆର. ପି. ପରାଞ୍ଜପେ କହୁଥିଲେ, କେମ୍ବ୍ରିଜ କିମ୍ବା ଅକ୍‌ସ୍‌ଫୋର୍ଡ ଗଲେ ଭାରତବର୍ଷର ପରିଚୟ ମିଳେ । କିନ୍ତୁ ଏହାକୁ ଆହୁରି ସ୍ପଷ୍ଟଭାବରେ କହିଲେ ଠିକ୍ ହେବ ଯେ କେମ୍ବ୍ରିଜକୁ ଗଲେ ଜଣେ ପୃଥିବୀକୁ ଜାଣିପାରିବ । ମୁଁ ଯେତେ-ବେଳେ କ୍ରାଇଷ୍ଟ'ସ୍ କଲେଜରେ ଯୋଗଦେଲି, ସେତେବେଳେ ବ୍ରିଟିଶ ଛାତ୍ରଙ୍କ ଛଡ଼ା,

ଭାରତ (ପାକିସ୍ତାନ ସମେତ), ସିଂହଳ, ବ୍ରହ୍ମଦେଶ, ଚୀନ, କୋରିଆ, ସିଙ୍ଗାପୁର, ଅଷ୍ଟ୍ରେଲିଆ ଓ ଆଫ୍ରିକାରୁ ଛାତ୍ରମାନେ ଆସିଥିଲେ । ବିଶ୍ୱବିଦ୍ୟାଳୟର ଚାରିଆଡ଼କୁ ଚାହିଁଲେ ପୃଥିବୀର ସବୁ ଦେଶର ପ୍ରତିନିଧିଙ୍କୁ ସେଠାରେ ଦେଖିବାକୁ ମିଳୁଥିଲା ।

## ଶିକ୍ଷକଙ୍କ କର୍ତ୍ତବ୍ୟଜ୍ଞାନ

ଯୁଦ୍ଧ ଯେତିକି ଘନେଇଲା, ବିଶ୍ୱବିଦ୍ୟାଳୟରେ ସେତିକି ସେତିକି ବ୍ରିଟିଶ ଛାତ୍ରଙ୍କ ସଂଖ୍ୟା କମିବାକୁ ଲାଗିଲା । ଅଧ୍ୟାପକମାନଙ୍କ ମଧ୍ୟରେ ଯେଉଁମାନେ ଯୁବକ ଥିଲେ, ସେମାନେ ମଧ୍ୟ ସୈନ୍ୟବାହିନୀରେ ଯୋଗଦେଲେ । ଏପରିକି ସୈନ୍ୟ-ବାହିନୀରେ ଯୋଗ ଦେବାର ବୟସ ଯେଉଁମାନଙ୍କର ଗୁଲିଯାଇଥିଲା, ସେମାନେ ସୈନ୍ୟବାହିନୀପାଇଁ ଶିକ୍ଷାର୍ଥୀମାନଙ୍କୁ ଡ୍ରିଲ୍ କରାଇବା କିମ୍ବା ବିମାନ ଆକ୍ରମଣ ବେଳେ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ ଆଦି କାର୍ଯ୍ୟରେ ନିଜ ନିଜକୁ ନିୟୋଜିତ କରୁଥିଲେ । ଆମର ଉଦ୍ଭିଦବିଜ୍ଞାନ ଅଧ୍ୟାପକ ସାର୍ ଆର୍ଥର୍ ସିଓ୍ୱାର୍ଡ୍ ବୁଢ଼ା ହୋଇ ଯାଇଥିଲେ । ତଥାପି ତାଲିମବାହିନୀର ସେ ଜଣେ ଅଫିସର୍ ଭାବରେ କାର୍ଯ୍ୟ କରୁଥିଲେ । ଶିକ୍ଷକ ଗୋଷ୍ଠୀର କର୍ତ୍ତବ୍ୟଜ୍ଞାନ ଏପରି ଥିଲା ଯେ, ଏସବୁ କାର୍ଯ୍ୟରେ ଲାଗିଥିଲେ ମଧ୍ୟ ଅଧ୍ୟାପନାରେ ସେମାନେ କେବେ ହେଳା କରୁ ନଥିଲେ । ସାମରିକ ପୋଷାକ ପିନ୍ଧି ସେମାନେ କଲେଜକୁ ଆସି ପାଠ୍ୟ ବିଷୟରେ ବକ୍ତୃତା ଦେଉଥିଲେ କିମ୍ବା ପ୍ରାକ୍ଟିକାଲ୍ ଶ୍ରେଣୀମାନ ନେଉଥିଲେ ।

ସହରର ଗଳି ଓ ରାସ୍ତାମାନଙ୍କରେ ପୋଷାକରେ ଥିବା ସୈନ୍ୟ ଓ ଅଫିସର୍‌ମାନଙ୍କୁ ଦେଖିବା ଏକ ସାଧାରଣ ଦୃଶ୍ୟ ଥିଲା । ଏକ ସମୟରେ ସୈନ୍ୟ-ମାନଙ୍କୁ କଲେଜମାନଙ୍କରେ ଆଣି ରଖାଗଲା । ବିମାନ ଆକ୍ରମଣର ପ୍ରତିଷେଧକ ରୂପେ ରାସ୍ତାର ବତି ସବୁ ଲିଭାଇ ଦିଆଯାଇଥିଲା ଓ ଲୋକେ ତାଙ୍କର ଝରକାକୁ ଆବୃତ କରି ରଖୁଥିଲେ, ଯେପରିକି ବାହାରକୁ କୌଣସି ଆଲୁଅ ଦେଖାଯିବ ନାହିଁ । କେହି ଏ ବ୍ୟବସ୍ଥା ନ ମାନିଲେ କଠୋର ଦଣ୍ଡବିଧାନ କରାଯାଉଥିଲା । ଆମ କଲେଜର କେତେକ ଛାତ୍ରଙ୍କୁ ସେମାନଙ୍କର ଅସାବଧାନତାପାଇଁ ଜରିମାନା ଦେବାକୁ ପଡ଼ିଥିଲା । ଏହି ସବୁ ବ୍ୟବସ୍ଥା କାର୍ଯ୍ୟକାରୀ କରିବାପାଇଁ ଯଥେଷ୍ଟ ସଂଖ୍ୟାରେ ପୋଲିସ ନଥିବାରୁ ଏ. ଆର. ପି. ଲୋକେ ଓ ସ୍ୱେଚ୍ଛାସେବକମାନଙ୍କୁ ରଖାଗଲା । ଏହା କିପରି କଠୋର ଭାବରେ କାର୍ଯ୍ୟକାରୀ ହେବ, ତାହା ଦେଖିବା ହେଲା ସେମାନଙ୍କର କାମ ।

ଯୁଦ୍ଧର ପ୍ରଥମ ଅବସ୍ଥାରେ ଖାଦ୍ୟପେୟର ବିଶେଷ କଟକଣା ନଥିଲା । କିନ୍ତୁ ଇଂଲଣ୍ଡ ପ୍ରଣାଳୀ ଏବଂ ଅନ୍ୟସବୁ ସାମୁଦ୍ରିକ ଉପକୂଳରେ ମାଇନ୍ (ପାଣିତଳେ ରହିଥିବା ବିସ୍ଫୋରକ ବୋମା) ବିଞ୍ଛାଯିବା ଫଳରେ ଖୁବ୍ କଡ଼ାକଡ଼ି ବ୍ୟବସ୍ଥା ପ୍ରଚଳନ କରାଗଲା । ଉଦାହରଣସ୍ୱରୂପ ଆମକୁ ସପ୍ତାହକୁ ଚାରି ଆଉନ୍‌ସ ବା ଦୁଇ ଛଟାଙ୍କି ଚିନି ମିଳୁଥିଲା । ବହୁ ଲୋକ ଚାହାରେ ସାକାରିନ୍ ଖାଇଲେ ଏବଂ ମୋ ଭଳି କେତେକ ଲୋକ ଚା ସହିତ ଚିନି ଖାଇବା ବିଲ୍‌କୁଲ୍ ଛାଡ଼ିଦେଲେ ।

ଖାଦ୍ୟ ଯୋଗାଣରେ ସାହାଯ୍ୟ କରିବା ପାଇଁ ବହୁ ନାଗରିକ ପାର୍କ-ମାନଙ୍କରେ ଲମ୍ବା ଚୌଡ଼ା ମଇଦାନରେ ଜମି ଆବାଦ କରି ଆଳୁ, ପନିପରିବା ଓ ଏପରିକି ଗହମ ଚାଷ କଲେ । ମ୍ୟୁନିସିପାଲିଟି ଏହି ଉଦ୍ଦେଶ୍ୟରେ ଲୋକଙ୍କୁ ଜମି ଦେଉଥିଲେ । କେମ୍ବ୍ରିଜ ଓ ଅକ୍ସଫୋର୍ଡ ଉପରେ ବୋମାମାଡ଼ ହେଉ ନଥିଲା । ଆମେ ଶୁଣିଲୁ ବିଶ୍ୱବିଦ୍ୟାଳୟମାନଙ୍କ ଉପରେ ବୋମା ନ ପକାଇବା ପାଇଁ ଜର୍ମାନମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା । ଥରେ ଏକ ଛୁଟିରେ ମୁଁ ଲଣ୍ଡନର ଷ୍ଟ୍ରେଥାମ୍ ଠାରେ ରହୁଥିଲା । ଦିନେ ରାତିରେ ଆମେ ବିସ୍ଫୋରଣ ଶବ୍ଦ ଶୁଣିଲୁ । ଏକ ନିକଟବର୍ତ୍ତୀ ରେଳବାଇ ଷ୍ଟେସନରେ ବୋମା ପଡ଼ିଛି ବୋଲି ଆମେ ଶୁଣିଲୁ । ପରଦିନ ସକାଳେ ସେଠାକୁ ଦେଖିବାକୁ ଗଲୁ । କୋଠାଘରମାନଙ୍କର ଯଥା କ୍ଷତି ହୋଇଛି, ତାହା ଦେଖାଯାଉଥିଲା । କିନ୍ତୁ ସବୁ ଭଙ୍ଗା ଇଟା, ପଥର, ଅଳିଆ ଇତ୍ୟାଦି ତତ୍କାଳ ପରିଷ୍କାର ହୋଇଯାଇଥିଲା, ଯେପରିକି ଲୋକଙ୍କର ନୈତିକତା ଅବିଚଳିତ ରହେ । ଜେପେଲିନ୍ ଲଣ୍ଡନ ସହର ଉପରେ ଦେଇ ଉଡ଼ିବା ଏକ ସାଧାରଣ କଥା ହୋଇଯାଇଥିଲା । ବିମାନ ଆକ୍ରମଣରୁ ରକ୍ଷା ପାଇବାପାଇଁ ବହୁ-ସଂଖ୍ୟକ ଆଶ୍ରୟସ୍ଥଳ ନିର୍ମିତ ହୋଇଥିଲା ଓ ମାଟିତଳେ ଥିବା ରେଳଷ୍ଟେସନମାନ ମଧ୍ୟ ଏହି ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଥିଲା ।

## ଲଏଡ୍ ଜର୍ଜ୍

ଯୁଦ୍ଧର ପ୍ରଥମ ଅବସ୍ଥାରେ ଆସ୍‌କ୍ୱିଥ୍ ପ୍ରଧାନମନ୍ତ୍ରୀ ଥିଲେ । କିନ୍ତୁ ଜର୍ମାନମାନେ ଯେତେବେଳେ ଦ୍ରୁତ ଅଗ୍ରଗତି କରିଚାଲିଲେ, ତାହାଙ୍କ ସବୁ ଧ୍ୱଂସ କରିବାକୁ ଲାଗିଲେ ଓ ବ୍ରିଟିଶ ଦ୍ୱୀପପୁଞ୍ଜ ଅବରୁଦ୍ଧ ଅବସ୍ଥାରେ ରହି ଜିନିଷପତ୍ର ସବୁ ବାହାରୁ ଆସିବା ବହୁ ପରିମାଣରେ ବନ୍ଦ ହୋଇଗଲା, ଲୋକେ ଆସ୍‌କ୍ୱିଥ୍‌ଙ୍କ 'ଧୈର୍ଯ୍ୟ ଧର, ଅପେକ୍ଷା କର' ନୀତିକୁ ପସନ୍ଦ କରିପାରିଲେ ନାହିଁ । ୧୯୧୬ ମସିହାରେ

ଲଏଡ୍ ଜର୍ଜ୍ ପ୍ରଧାନମନ୍ତ୍ରୀ ହେଲେ । ସେ ଆସ୍‌କ୍ୱିଥ୍‌ଙ୍କ ଅପେକ୍ଷା ଅଧିକ ତତ୍ପର ଓ ଦକ୍ଷ ବ୍ୟକ୍ତି ଥିଲେ । ଶେଷରେ ଆମେରିକା ମିତ୍ର ପକ୍ଷରେ ଯୋଗଦେଲା ଓ ଜର୍ମାନ୍‌ମାନେ ପରାଜିତ ହେଲେ । ୧୯୧ ମସିହାରେ ସନ୍ଧି ଘୋଷିତ ହେଲା ।

ନିଃସନ୍ଦେହ ଭାବରେ ଲୋକେ ଯୁଦ୍ଧକାଳରେ ଅତିଶୟ ଦୁଃଖ-କଷ୍ଟ ମଧ୍ୟରେ ଗତ କରୁଥିଲେ । ସନ୍ଧି ଘୋଷଣା ସାରା ଦେଶରେ ଏକ ଆନନ୍ଦ ଉଚ୍ଛ୍ୱାସ ଖେଳାଇ ଦେଲା । କେମ୍ବ୍ରିଜ ଏଥିରୁ ଅଲଗା ନ ଥିଲା । ଲୋକେ ରାସ୍ତାରେ ଜମାହୋଇ ପାଟି ତୁଣ୍ଡ କରୁଥା'ନ୍ତି । ଆନନ୍ଦ ଉତ୍ସବରେ ମାତିଥାନ୍ତି । ପୂର୍ଣ୍ଣି ବତିଖୁଣ୍ଟମାନଙ୍କରେ ଆଲୁଅ ଜଳିଲା । ରାତିସାରା ଆନନ୍ଦ ଉତ୍ସବ ମଧ୍ୟରେ କେତେ ଗର୍ହିତ କାର୍ଯ୍ୟରେ ମଧ୍ୟ ଲୋକେ ମାତିଲେ । ଦୀର୍ଘ ଶୃଙ୍ଖଳବର୍ଦ୍ଧିତ କଠୋର ନିୟନ୍ତ୍ରଣ ମଧ୍ୟରେ ରହିବାପରେ ହଠାତ୍ ଏ ନିୟନ୍ତ୍ରଣ ଉଠିଗଲେ ସେମାନେ କିପରି ଅନୁଭବ କରିଥିବେ, ତାହା ସହଜରେ ଅନୁମାନ କରାଯାଇପାରେ ।

ଭାରତୀୟ ଛାତ୍ରମାନେ ବିଶେଷ ଖୁସି ହୋଇ ନଥିଲେ ବୋଲି ଏଠାରେ ଉଲ୍ଲେଖ କରାଯାଇପାରେ । କାରଣ ବିଦେଶୀ ଶାସନ ବିରୁଦ୍ଧରେ ଏକ ବିଦ୍ରୋହ ଭାବ ବଢ଼ା, ଇଂଲଣ୍ଡରେ ସେମାନଙ୍କର ଅଭିଜ୍ଞତା, ସେମାନଙ୍କପ୍ରତି ପାଶ୍ଚାତ୍ୟ ଅନ୍ୟର ବ୍ୟବହାର ଭାରତୀୟ ଛାତ୍ରମାନଙ୍କ ମନରେ ଏକ ବ୍ରିଟିଶ ବିରୋଧୀ ମନୋଭାବ ସୃଷ୍ଟି କରିଥିଲା । ହୁଏତ ଜର୍ମାନ୍‌ମାନଙ୍କର ବିଜୟ ଭାରତପାଇଁ ଏକ ନୂଆ ଧରଣର ଉପନିବେଶବାଦ ସୃଷ୍ଟି କରିଥା'ନ୍ତା । କିନ୍ତୁ ବ୍ରିଟିଶ ବିରୋଧୀ ମନୋଭାବ, ସନ୍ଧି ଦିବସ ଦିନ ଭାରତୀୟ ଛାତ୍ରମାନଙ୍କୁ ବିଶେଷ ଆନନ୍ଦିତ କରିନଥିଲା ।

## ଶୋକାବହ ଘଟଣା

ଯୁଦ୍ଧକାଳୀନ ବିଭିନ୍ନ ଅବସ୍ଥା ବିଷୟ ଆଲୋଚନା ଶେଷ କରିବା ପୂର୍ବରୁ ଏକ ଶୋକାବହ ଘଟଣା ମୁଁ ଉଲ୍ଲେଖ ନ କରି ରହିପାରୁ ନାହିଁ । ଏହା ସହିତ ଜଣେ ଓଡ଼ିଆ ଛାତ୍ର ସମ୍ପୃକ୍ତ । ଆମେ ସମସ୍ତେ ଏଥିରେ ଅତିଶୟ ବିଚଳିତ ହୋଇ-ପଡ଼ିଲୁ । ସ୍ୱର୍ଗୀୟ ରାୟବାହାଦୁର ଚନ୍ଦ୍ରମଣି ଆଚାର୍ଯ୍ୟଙ୍କର ଜଣେ ଭଣଜାଇ ଶ୍ରୀ ହେମଚନ୍ଦ୍ର ଶତପଥୀ, ବାର-ଆଟ୍-ଲ ଶେଷକରି ଘରକୁ ଫେରୁଥିଲେ । ସେ ଯେଉଁ ଷ୍ଟିମର୍‌ରେ ଆସୁଥିଲେ, ଇଂଲିଶ ପ୍ରଣାଳୀରେ ଜର୍ମାନ୍‌ମାନଙ୍କ ଟର୍ପେଡୋ ଆକ୍ରମଣରେ ତାହା ବୁଡ଼ିଗଲା । ହେମଚନ୍ଦ୍ରଙ୍କ ମୃତଦେହ ପ୍ଲାଇମାଉଥ୍‌କୁ ଅଣାଗଲା । ଶ୍ରୀ ଭୁବନା-

ନନ୍ଦ ଦାସ ବ୍ରିଷ୍ଟଲ୍‌ଠାରେ ସେତେବେଳେ ଜଣେ ଇଞ୍ଜିନିଅର୍ ଭାବରେ କାର୍ଯ୍ୟ କରୁଥିଲେ । ସେ ଯାଇ ଏହି ମୃତ ଦେହକୁ ଚିହ୍ନଟ କଲେ ଓ ତା'ପରେ ତାହା ଲଣ୍ଡନ ଅଣାଗଲା । ସଚ୍ଚିଦାନନ୍ଦ ରାୟ ଅକ୍ସଫୋର୍ଡରୁ ଓ ମୁଁ କେମ୍ବ୍ରିଜରୁ ଆସି ଶବଦାହ କାର୍ଯ୍ୟରେ ଯୋଗ ଦେଲୁ । ଶତପଥୀଙ୍କର କେତେଜଣ ଭାରତୀୟ ଓ ଇଂରେଜ ବନ୍ଧୁ ମଧ୍ୟ ଏଥିରେ ଯୋଗ ଦେଇଥିଲେ । ବୈଦ୍ୟୁତିକ ଦାହଯନ୍ତ୍ର (Electrical Crematorium)ରେ ତାଙ୍କର ଶବଦାହ କରାଯାଇଥିଲା । ମୋର ବନ୍ଧୁ ଶ୍ରୀ ପି. କେ. ଆଚାର୍ଯ୍ୟ, ଯାହାଙ୍କ ସମ୍ପର୍କରେ ମୁଁ ପୂର୍ବରୁ ଉଲ୍ଲେଖ କରିଛି, ସେ ସବିଧି ବେଦମନ୍ତ୍ର ପାଠ କରିଥିଲେ ଏବଂ ଶବାଧାର ଉପରେ ପୁଷ୍ପମାଲ୍ୟ ଅର୍ପଣ କରାଯାଇଥିଲା । ଶ୍ରୀ ଭୁବନାନନ୍ଦ ଦାସ, ଶ୍ରୀ ଏସ୍. ସି. ରାୟ ଓ ମୁଁ ସେହି ଦିନଟି ଲଣ୍ଡନରେ କଟାଇ ତା ପରଦିନ ନିଜ ନିଜ କର୍ମକେନ୍ଦ୍ରକୁ ଫେରିଯାଇଥିଲୁ । ଶ୍ରୀ ଭୁବନାନନ୍ଦ ଦାସ ବ୍ରିଷ୍ଟଲ୍‌ଠାରେ ତାଙ୍କ ସହିତ ଗୋଟିଏ ଛୁଟି କଟାଇବା ପାଇଁ ଆମକୁ ନିମନ୍ତ୍ରଣ କରିଥିଲେ ଓ ପରେ ଆମେ ତାହା ରକ୍ଷା କରିଥିଲୁ ।



# କେମ୍ବ୍ରିଜରେ ଛାତ୍ର ଜୀବନ

ଏବେ ମୋର କେମ୍ବ୍ରିଜ ରହଣି ବିଷୟକୁ ପୁଣି ଫେରିଆସୁଛି । ପୂର୍ବରୁ ଉଲ୍ଲେଖ କରିଛି ଯେ ମୁଁ ୧୯୧୪ ଅକ୍ଟୋବର ମାସରେ କ୍ରାଇଷ୍ଟ'ସ୍ କଲେଜରେ ଯୋଗ ଦେଲି । ଅନ୍ୟ ଭାରତୀୟ ଛାତ୍ର ଜଣକ ହେଉଛନ୍ତି ଆସାମର ଇନାମୁଲ୍ ମଜିଦ୍ । ତାଙ୍କ କଥା ପୂର୍ବରୁ ଉଲ୍ଲେଖ କରାଯାଇଛି । ମୁଁ ଏ କଥା ଲେଖିବାକୁ ଭୁଲି ଯାଇଥିଲି ଯେ ମାଟ୍ରିକୁଲେସନ୍ ଉତ୍ସବ ପରେ ବାଧ୍ୟବାଧକ ଭାବରେ ବିଶ୍ୱବିଦ୍ୟାଳୟ ଛାତ୍ରଜୀବନ ଆରମ୍ଭ ହୁଏ । ପ୍ରତ୍ୟେକ କଲେଜରେ ଗୋଟିଏ ଦିନ ନିର୍ଦ୍ଦିଷ୍ଟ ଥାଏ, ସେଇଦିନ କି ନୂଆ ହୋଇ ଯୋଗ ଦେଇଥିବା ସେହି କଲେଜର ଛାତ୍ରମାନେ ଟୋପି ଓ ଗାଉନ୍ ପିନ୍ଧି ସିନେଟ୍ ହାଉସ୍‌କୁ ଯା'ନ୍ତି । ସେଠାରେ କୁଳପତି ଏହି ଉତ୍ସବପାଇଁ ନିର୍ଦ୍ଦିଷ୍ଟ ଏକ ଚୌକିରେ ବସିଥା'ନ୍ତି ଓ ତାଙ୍କ ଆଗରେ ଛାତ୍ରମାନଙ୍କୁ ଜଣେ ଫେଲୋ ଉପସ୍ଥାପିତ କରନ୍ତି । ଏହି ଫେଲୋଙ୍କୁ ପ୍ରିଲେକ୍ଟର୍ କୁହାଯାଏ । ସେ ତାଙ୍କର ଡାହାଣ ହାତ ବଢ଼ାଇ ଦିଅନ୍ତି ଓ ପାଞ୍ଚଜଣ ଛାତ୍ର ତାଙ୍କର ଗୋଟିଏ ଗୋଟିଏ ଆଙ୍ଗୁଠିକୁ ଧରନ୍ତି । ତା ପରେ ସେ ଲାଟିନ୍‌ରେ କେତୋଟି ମନ୍ତ୍ର ଉଚ୍ଚାରଣ କରି କୁଳପତିଙ୍କ ଆଗରେ ସେମାନଙ୍କୁ ଉପସ୍ଥାପିତ କରନ୍ତି । ଛାତ୍ରମାନେ ଗୋଟିଏ ଆଣ୍ଠୁ ମାଡ଼ି ଆଣେଇ କୁଳପତିଙ୍କ ଦୁଇ ହାତ ଉପରେ ସେମାନଙ୍କ ହାତ ରଖନ୍ତି ଓ କୁଳପତି ଲାଟିନ୍‌ରେ କେତେକ ମନ୍ତ୍ର ଉଚ୍ଚାରଣ କରି ସେମାନଙ୍କୁ ବିଶ୍ୱବିଦ୍ୟାଳୟ ଛାତ୍ରଭାବେ ଗ୍ରହଣ କରନ୍ତି । ଏହିପରି ପାଞ୍ଚଜଣ ବା ଶେଷରେ ଯଦି କମ୍ ହେଲେ ସେମାନଙ୍କ ପାଇଁ ଏହି ଉତ୍ସବ ଚାଲେ । ଯେତେବେଳେ ଏହା ଶେଷହୁଏ ଛାତ୍ରମାନେ ସେମାନଙ୍କର ନାମ ରେଜିଷ୍ଟ୍ରାରଙ୍କଦ୍ୱାରା ରଖାଯାଇଥିବା ରେଜିଷ୍ଟ୍ରାରରେ ଦସ୍ତଖତ କରନ୍ତି । ଆମ ବିଶ୍ୱ-ବିଦ୍ୟାଳୟମାନଙ୍କରେ ବା ଇଂଲଣ୍ଡ୍ର ଅନ୍ୟ ସବୁ ବିଶ୍ୱବିଦ୍ୟାଳୟରେ ଯାହାଙ୍କୁ ରେଜିଷ୍ଟ୍ରାର ବୋଲି କୁହାଯାଏ, କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ସେ ରେଜିଷ୍ଟ୍ରାରି ନାମରେ ଅଭିହିତ ।

ଏହିପରି ନୂଆ ହୋଇ ପ୍ରବେଶ କରିଥିବା ଛାତ୍ର କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ତାଙ୍କର ଜୀବନ ଆରମ୍ଭ କରନ୍ତି । ତାଙ୍କର ଲେକ୍‌ଚର୍ ଓ ଟ୍ୟୁଟରିଆଲ୍ ଶ୍ରେଣୀରେ ଉପସ୍ଥିତି ସମ୍ପର୍କରେ ପୂର୍ବରୁ ଆଲୋଚନା କରାଯାଇଛି । କେମ୍ବ୍ରିଜ ପରି ଏକ ସୁସଜ୍ଜିତ

(compact) ବିଶ୍ୱବିଦ୍ୟାଳୟରେ ଛାତ୍ର କେବଳ କ୍ଲାସ ଲେକ୍‌ଚରରୁ ଶିକ୍ଷାଲାଭ କରନ୍ତି ନାହିଁ । ବିଭିନ୍ନ ବିଷୟର ଦାୟିତ୍ୱରେ ଥିବା ବିଶେଷଜ୍ଞମାନେ ଯେଉଁସବୁ ବକ୍ତୃତା ଦିଅନ୍ତି, ସେଥିରେ କୌଣସି ଅନୁରକ୍ତ ଛାତ୍ରଙ୍କର ଯୋଗଦେବାରେ ବାଧା ନ ଥାଏ । ପଦାର୍ଥ-ବିଜ୍ଞାନ, ଜ୍ୟୋତିଷଶାସ୍ତ୍ର ଓ ଉଦ୍ଭିଦ ବିଜ୍ଞାନ ମୋର ଅଧୀତ ବିଷୟ ଥିଲେ ମଧ୍ୟ ମୁଁ ଇଂରାଜୀ, ସାହିତ୍ୟ, ଭୂତତ୍ତ୍ୱ, ନୃତତ୍ତ୍ୱ ଓ ଦର୍ଶନଶାସ୍ତ୍ର ତଥା ଅନ୍ୟାନ୍ୟ ବିଷୟମାନଙ୍କରେ ଦିଆଯାଉଥିବା ବକ୍ତୃତାରେ ଯୋଗ ଦେଉଥିଲି ।

## କ୍ଲବ୍ ଜୀବନ

ଏହିରୁ ବକ୍ତୃତା ବ୍ୟତୀତ ବହୁ ସୋସାଇଟି ଓ କ୍ଲବ୍‌ମାନ ଥାଏ ଯେଉଁଠି କି ଅନୁରକ୍ତ ଛାତ୍ରମାନେ ଯୋଗଦେଇ ବିଭିନ୍ନ ବିଷୟରେ ଆଲୋଚନା କରନ୍ତି ଏବଂ ବିଶିଷ୍ଟ ବ୍ୟକ୍ତିମାନଙ୍କ ଭାଷଣ ଶୁଣନ୍ତି । ବିଶ୍ୱବିଦ୍ୟାଳୟ ୟୁନିୟନ୍ (ଯାହାର କି ସଭ୍ୟ ହେବା ବାଧ୍ୟତାମୂଳକ ନୁହେଁ) ପକ୍ଷରୁ ମଧ୍ୟ ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋଚନା କରାଯାଏ । ଯେଉଁମାନେ ସଭ୍ୟ ନୁହନ୍ତି ସେମାନେ ଅନ୍ୟ ସଭ୍ୟଙ୍କର ଅତିଥି ଭାବରେ ଯୋଗ ଦେଇପାରନ୍ତି । ଭାରତୀୟ ଛାତ୍ରମାନଙ୍କର 'ମଜଲିସ୍' ଥିଲା । ଏହି ସୋସାଇଟି ସପ୍ତାହରେ ଥରେ ବସେ ଓ ଏହା ପକ୍ଷରୁ ବିଭିନ୍ନ ବିଷୟରେ ଆଲୋଚନା ଏବଂ ଭାରତୀୟ ଓ ବିଦେଶୀୟ ବିଭିନ୍ନ ଅତିଥିଙ୍କର ବକ୍ତୃତାଦାନର ବ୍ୟବସ୍ଥା କରାଯାଇଥାଏ । ଏହି ବିଷୟରେ ପରେ ମୁଁ ଉଲ୍ଲେଖ କରିବି । ଆଉ ଗୋଟିଏ କ୍ଲବ୍ ଥିଲା, ତାର ନାମ 'ହେରେଟିକ୍‌ସ୍' । ଏହାର ସଂଗଠକ ମିଷ୍ଟର ଓଗଡେନ୍ କେମ୍ବ୍ରିଜ ମାଗାଜିନ୍‌ର ସମ୍ପାଦକ ମଧ୍ୟ ଥିଲେ । ଏହି କ୍ଲବ୍ ସପ୍ତାହରେ ଥରେ ବସୁଥିଲା ଓ ବିଶିଷ୍ଟ ବକ୍ତାମାନେ ନିମନ୍ତ୍ରିତ ହୋଇ ଆସୁଥିଲେ । ବର୍ଟ୍ରାଣ୍ଡ ରସେଲ୍ ଏବଂ ଅନ୍ୟାନ୍ୟ ଖ୍ୟାତନାମା ପଣ୍ଡିତମାନେ କ୍ଲବ୍‌କୁ ଆସି ଭାଷଣ ଦେଉଥିଲେ । କ୍ଲବ୍‌ର ନାମକରଣ ଦୃଷ୍ଟିରୁ ସଭ୍ୟମାନେ କୌଣସି ନିର୍ଦ୍ଦିଷ୍ଟ ଧର୍ମମତାବଲମ୍ବୀ ନ ଥିଲେ । ସେମାନେ ଯାହା ଯୁକ୍ତିସମ୍ମତ ତାହାକୁ ହିଁ ଗ୍ରହଣ କରୁଥିଲେ । ମୁଁ ଏହି କ୍ଲବ୍‌କୁ ବରାବର ଯାଉଥିଲି ।

## ଚରମପନ୍ଥୀ ଦଳକ

ଏବଂ କୁହାଯାଇ ଥିବା ଭାରତୀୟ 'ମଜଲିସ୍'—ତର୍କସଭା ଓ ସାଂସ୍କୃତିକ ଅନୁଷ୍ଠାନ ଉଦ୍ଦେଶ୍ୟରେ ଗଢ଼ା ହୋଇଥିଲା । ସମସ୍ତେ ନ ହେଲେ ମଧ୍ୟ ପ୍ରାୟ ସବୁ ଭାରତୀୟ ଛାତ୍ର ଏହାର ସଭ୍ୟ ଥିଲେ । ମୋର ଯେତେ ଦୂର ମନେପଡ଼ୁଛି, ସିଂହଳ ଛାତ୍ରମାନେ ମଧ୍ୟ

ଏହାର ସଭ୍ୟ ଥିଲେ । ସଭ୍ୟମାନେ ବର୍ଷକପାଇଁ ଜଣକୁ ସଭାପତିରୂପେ ବାଛୁଥିଲେ । ଜଣେ ସମ୍ପାଦକ ମଧ୍ୟ ରହୁଥିଲେ । ମୁଁ ବର୍ଷେ ସଭାପତିରୂପେ ନିର୍ବାଚିତ ହୋଇଥିଲି । ବହୁ ବିଶିଷ୍ଟ ଭାରତୀୟ କେମ୍ବ୍ରିଜ ପରିଦର୍ଶନରେ ଯାଇ 'ମଜଲିସ୍'ରେ ଭାଷଣ ଦେଉଥିଲେ । ମିଷ୍ଟର ଜିନ୍ନା, ମିଷ୍ଟର ସି. ୱାଇ. ଚିନ୍ତାମଣି, ଶ୍ରୀମତୀ ନାଇଡୁ, ଲୋକମାନ୍ୟ ବାଳ-ଗଙ୍ଗାଧର ତିଳକ, ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ, ଆଚାର୍ଯ୍ୟ ଜଗଦୀଶଚନ୍ଦ୍ର ବୋଷ ଓ ଅନ୍ୟ ବହୁ ବିଶିଷ୍ଟ ଭାରତୀୟ 'ମଜଲିସ୍' ପକ୍ଷରୁ ଆୟୋଜିତ ସଭାରେ ଭାଷଣ ଦେଇଛନ୍ତି । ମୁଁ ସଭାପତି ଥିବାବେଳେ ଲୋକମାନ୍ୟ ତିଳକ ଓ 'କେଶରୀ'ର ସମ୍ପାଦକ ଶ୍ରୀ କେଲ୍‌କାର୍ କେମ୍ବ୍ରିଜ ପରିଦର୍ଶନରେ ଆସିଥିଲେ । ମୁଁ ଯେଉଁ ବସାଘରେ ରହୁଥିଲି, ତାହା ଖାଲି-କରି ତାଙ୍କ ରହିବାପାଇଁ ମୁଁ ବ୍ୟବସ୍ଥା କରିଥିଲି । ଲୋକମାନ୍ୟ 'ମଜଲିସ୍'ରେ ଭାଷଣ ଦେବାବେଳେ ବହୁ ଇଂରେଜ ଛାତ୍ର ସଭାରେ ଯୋଗ ଦେଇଥିଲେ । ସେ ବ୍ରିଟିଶ ରାଜ୍ୟଗୋଷ୍ଠୀରେ ଭାରତର ସ୍ୱରାଜ୍ୟ ସମ୍ପର୍କରେ କହୁଥିଲେ । ଭାଷଣ ଶେଷ ହେବାପରେ ଜଣେ ଇଂରେଜ ଛାତ୍ର ମନ୍ତବ୍ୟ ଦେଲେ, "ଏ ଯଦି ତୁମର ଚରମପନ୍ଥୀ, ତା'ହେଲେ ମୁଁ ନରମପନ୍ଥୀମାନଙ୍କୁ ଶୁଣିବାକୁ ଚାହେଁ ନାହିଁ ।"

ଯେତେବେଳେ ଆଚାର୍ଯ୍ୟ ଜଗଦୀଶଚନ୍ଦ୍ର କେମ୍ବ୍ରିଜ ପରିଦର୍ଶନରେ ଆସିଲେ, ସେ ତାଙ୍କର ପ୍ରାଣୀ-ପଦାର୍ଥ ବିଦ୍ୟା (Biophysics) ସମ୍ପର୍କୀୟ ଗବେଷଣା ବିଷୟରେ ବିଶ୍ୱବିଦ୍ୟାଳୟର ଉଦ୍ଭିଦ ବିଜ୍ଞାନ ପରୀକ୍ଷାଗାରରେ ଭାଷଣ ଦେଇଥିଲେ । ତାଙ୍କ ଭାଷଣ ଶୁଣିବାପାଇଁ ଖୁବ୍ ଗହଳି ହୋଇଥିଲା । ମୁଁ ସେତେବେଳେ ଡକ୍ଟର୍ ଏଫ୍. ଏଫ୍. ବ୍ଲାକ୍‌ମାନ୍‌ଙ୍କ ନିର୍ଦ୍ଦେଶରେ ଜଣେ ଗବେଷକ ଛାତ୍ରରୂପେ କାର୍ଯ୍ୟ କରୁଥିଲି । ବକ୍ତୃତା ଶେଷ ହେବାର ଧାନକ ପରେ ଡକ୍ଟର ବ୍ଲାକ୍‌ମାନ୍ 'ଜଗଦୀଶଚନ୍ଦ୍ର' ଶବ୍ଦର ଅର୍ଥ କ'ଣ ବୋଲି ମୋତେ ପଚାରିଲେ । ମୁଁ ବୁଝାଇ କହିଲି, ଜଗତର ଈଶ୍ୱରଙ୍କର ଚନ୍ଦ୍ର । ଡକ୍ଟର ବ୍ଲାକ୍‌ମାନ୍ କହିଉଠିଲେ, "ବେଶ୍ ଗୋଟାଏ ନାମ ତ ।" ବିଶିଷ୍ଟ ଭାରତୀୟମାନଙ୍କର କେମ୍ବ୍ରିଜ ପରିଦର୍ଶନ ସମୟର ଗୋଟିଏ ଦୁଇଟି ଘଟଣା ମୁଁ ଏଠାରେ ଉଲ୍ଲେଖ କରିବାକୁ ଚାହେଁ । ଯେତେବେଳେ ଶ୍ରୀମତୀ ନାଇଡୁ ଆସିଥିଲେ ତାଙ୍କୁ ସମ୍ବର୍ଦ୍ଧନା କରିବା ପାଇଁ ଏକ ଚା' ଭୋଜିର ବ୍ୟବସ୍ଥା କରାଯାଇଥିଲା, ତାଙ୍କ ସହିତ ମୋତେ ପରିଚିତ କରାଇଦେବା ପାଇଁ ମୁଁ ଜଣେ ବନ୍ଧୁଙ୍କୁ ଅନୁରୋଧ କଲି । ଯେତେବେଳେ ମୋର ବନ୍ଧୁ ତାଙ୍କ ସହିତ ମୋତେ ପରିଚିତ କରାଇଲେ, ସେ କହି ଉଠିଲେ, "କ'ଣ ହେଲା, ତୁମେ ମୋତେ ଭୁଲି ଗଲଣି କି ?" ବାସ୍ତବିକ ତାଙ୍କ ସହିତ ପୂର୍ବରୁ ମୋର କେବେ

ଦେଖା ସାକ୍ଷାତ୍ ହୋଇ ନ ଥିଲା । ସେ ବୋଧହୁଏ ମୋ' ସମ୍ପର୍କରେ ପୂର୍ବରୁ ଶୁଣିଥିବେ ଓ ତାଙ୍କ ସହିତ ମୁଁ ପରିଚିତ ବୋଲି ଭାବନେଇଥିବେ । ସେ ଯେତେବେଳେ ଏ ମନ୍ତବ୍ୟ ଦେଲେ ମୁଁ ନୀରବ ରହିଲି ଓ ମୋର ସ୍ମୃତି ବିଭ୍ରମ ବୋଲି ମାନିଲି ।

ସାର୍ ସି. ଭି. ରମଣଙ୍କର କେମ୍ବ୍ରିଜ ପରିଦର୍ଶନ ବେଳେ ଆହୁରି ଏକ ଘଟଣା ଘଟିଥିଲା । ଏକ ଚା' ଭୋଜରେ ମାନ୍ଦ୍ରାଜରୁ ଆସିଥିବା ଆମର ଜଣେ ବନ୍ଧୁ ତାଙ୍କ ନିକଟରେ ମାଂସାହାରକୁ ଖୁବ୍ ଜୋର୍‌ରେ ସମର୍ଥନ କରୁଥିଲେ । କିଛି ସମୟ ଶୁଣିବା ପରେ ସାର୍ ସି. ଭି. ରମଣ ତାଙ୍କର ଠେକ୍-ଠୋକ୍ ଢଙ୍ଗରେ କହିଲେ, "ୟୋରନ୍ 'ତୁମେ ଉଚ୍ଛାଟରେ ପ୍ରଶଂସା କରୁଛ । ମୁଁ ଜଣେ ଶାକାହାରୀ । କିନ୍ତୁ ମୋର କେବେହେଲେ କୌଣସି ରୋଗ ହୋଇ ନାହିଁ ।" ଏତିକିରେ ଆମର ବନ୍ଧୁ ନୀରବ ହୋଇଗଲେ ।

ଅନ୍ୟ ଜଣେ ବିଶିଷ୍ଟ ବ୍ୟକ୍ତି ଯେ କେମ୍ବ୍ରିଜ ପରିଦର୍ଶନରେ ଯାଇ ଭାରତୀୟ 'ମଜଲିସ୍' ପକ୍ଷରୁ ଲିଓନାର୍ଡ୍ ହୋଟେଲରେ ଆୟୋଜିତ ଏକ ଭୋଜି ସଭାରେ ଭାଷଣଦେଇ ପ୍ରଶଂସିତ ହୋଇଥିଲେ, ସେ ଥିଲେ ହୃଦ୍ୟ ସେବକ ସମାଜର ଜଣେ ବିଶିଷ୍ଟ ସଭ୍ୟ ।

## ସମସାମୟିକ ଭାରତୀୟ

ମୁଁ ପୂର୍ବରୁ ଉଲ୍ଲେଖ କରିଛି ଯେ ଇନାମୁଲ୍ ମଜିଦ୍ ଏକମାତ୍ର ଭାରତୀୟ, ଯେ କି ୧୯୧୪ ମସିହାରେ କ୍ରାଇଷ୍ଟ'ସ୍ କଲେଜରେ ଯୋଗଦେଇଥିଲେ । ତାଙ୍କର ବାପା କ୍ରାଇଷ୍ଟ'ସ୍ କଲେଜରେ ପଢ଼ୁଥିଲେ । ଇନାମୁଲ୍ ମଜିଦ୍ କ୍ରାଇଷ୍ଟ'ସ୍ କଲେଜକୁ ଆସିବା ଆଗରୁ କେମ୍ବ୍ରିଜରେ ପର୍ସ ନାମକ ସ୍କୁଲରେ ପଢ଼ୁଥିଲେ । ଆହୁରି ଅନେକ ଭାରତୀୟ ଥିଲେ, ଯେ କି ମୋ'ଠୁ ଉପର ଶ୍ରେଣୀରେ ଥିଲେ । ସେମାନେ ହେଲେ ପଞ୍ଜାବର ମହମ୍ମଦ ଆଫଜଲ୍ ହୁସେନ୍, ମାନ୍ଦ୍ରାଜର ଏ. କୃଷ୍ଣମେନନ୍ । ଆଫଜାଲ ହୁସେନ୍ ମିଆଁ ଫଜଲ ହୁସେନ୍‌ଙ୍କ ସାନଭାଇ । ଫଜଲ ହୁସେନ୍ ଜଣେ ବିଶିଷ୍ଟ ରାଜନୀତିଜ୍ଞରୂପେ ଅବିଭକ୍ତ ପଞ୍ଜାବର ମନ୍ତ୍ରୀଥିଲେ ଓ ପରେ ପାକିସ୍ତାନର ଜଣେ ବିଶିଷ୍ଟ ନେତା ହୋଇଥିଲେ । ଆଫଜଲ୍ ହୁସେନ୍ ତାଙ୍କର ଦ୍ୱିତୀୟ ଭାଗ ଟ୍ରାଇପସ୍ ପାଇଁ ପ୍ରାଣୀତତ୍ତ୍ୱକୁ ଏକ ବିଷୟ-ରୂପେ ଗ୍ରହଣ କରିଥିଲେ ଓ ବିଶ୍ୱବିଦ୍ୟାଳୟରେ ଜଣେ ଗବେଷକ ନିଯୁକ୍ତ ହୋଇଥିଲେ । ଭାରତକୁ ଫେରିଆସିବା ପରେ ସେ ଭାରତୀୟ ଏଗ୍ରିକଲଚରାଲ୍ ସର୍ଭିସ୍ (ବର୍ତ୍ତମାନ ବିଲୁପ୍ତ ହୋଇ ଯାଇଥିବା ଆଇ. ଏ. ଏସ୍.)ରେ ଯୋଗଦେଇ ବିହାରର ପୁସା ଅନୁଷ୍ଠାନରେ କାର୍ଯ୍ୟ କଲେ । ପାକିସ୍ତାନ ହେବା ପରେ ସେ ସେଠାରେ ରହିବା ପାଇଁ ପସନ୍ଦ କଲେ ଓ

ଲାହୋରର ପଞ୍ଜାବ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ପରେ ପାକିସ୍ତାନ ପବ୍ଲିକ୍ ସର୍ଭିସ୍ କମିସନ୍‌ର ସେ ଚେୟାରମାନ୍ ହେଲେ । ଆମେ ଦୁହେଁ ବଡ଼ ବନ୍ଧୁ ଥିଲୁ ଓ ଏବେ ମଝିରେ ମଝିରେ ଆମ ମଧ୍ୟରେ ପତ୍ରାଳାପ ହୁଏ । ମୋ'ଫଜ୍ଜ ହୁସେନ୍ ଟ୍ରାଇପସ୍ ପ୍ରଥମ ଭାଗରେ ଦ୍ୱିତୀୟ ଶ୍ରେଣୀ ଓ ଦ୍ୱିତୀୟ ଭାଗରେ ପ୍ରଥମ ଶ୍ରେଣୀ ପାଇଥିଲେ । ଆମେ ଦୁହେଁ ଟିକିଏ ବେଶି ବୟସରେ କେମ୍ବ୍ରିଜରେ ଯୋଗ ଦେଇଥିଲୁ । କେବଳ ଆମ କଥା ନୁହେଁ; ଯେଉଁମାନେ ଅପେକ୍ଷାକୃତ ବେଶି ବୟସରେ କେମ୍ବ୍ରିଜରେ ଯୋଗ ଦେଉଥିଲେ ସେମାନେ ଟ୍ରାଇପସ୍ ପ୍ରଥମ ଭାଗ ଅପେକ୍ଷା ଦ୍ୱିତୀୟ ଭାଗରେ ଭଲ କରୁଥିଲେ । ଏହାର କାରଣ ବୁଝାଇବା କଷ୍ଟକର । ବିଭିନ୍ନ ବିଷୟରେ ଆଲୋଚନା କରି ନିଜର ମତାମତ ଦେବାର ଦକ୍ଷତା ସାଧାରଣତଃ ଅଧିକ ବୟସର ଯୁବକମାନଙ୍କର ଥାଏ । ବିଶେଷତଃ ପ୍ରକୃତ ବିଜ୍ଞାନ ବିଷୟମାନଙ୍କରେ ଏହା ସହଜ ହୋଇଥାଏ । କେମ୍ବ୍ରିଜ ପରୀକ୍ଷା ପ୍ରଣାଳୀ ବର୍ଗୀକରଣ ବା ଗ୍ରାଦାନ(grading)ଉପରେ ପ୍ରତିଷ୍ଠିତ, ନମ୍ବର ଦେବାଉପରେ ନୁହେଁ । ଜଣେ ବହୁସଂଖ୍ୟକ ପ୍ରଶ୍ନର ଉତ୍ତର ଦେଇ 'ଗ' ବର୍ଗ ଲାଭ କରିପାରନ୍ତି ଓ ଅନ୍ୟ ଜଣେ ଅଳ୍ପ ପ୍ରଶ୍ନର ଉତ୍ତର ଦେଇ 'କ' ବର୍ଗ ବା ଗ୍ରେଡ୍ ଲାଭ କରିପାରନ୍ତି । ମୁଁ ଜଣେ ଭାରତୀୟ ଛାତ୍ରଙ୍କ କଥା ଜାଣେ । ସେ ପ୍ରଥମ ଶ୍ରେଣୀ ପାଇଥିଲେ, କାରଣ ତାଙ୍କର ପ୍ରବନ୍ଧଟି ଖୁବ୍ ଭଲ ହୋଇଥିଲା ।

ଭାରତକୁ ଫେରିଆସିବା ପରେ ମୁଁ ଆଫଜଲ୍ ହୁସେନ୍‌ଙ୍କୁ ଭାରତୀୟ ବିଜ୍ଞାନ କଂଗ୍ରେସ ସଭାମାନଙ୍କରେ ଦେଖିଛି । ସେ ଥରେ ଭାରତୀୟ ବିଜ୍ଞାନ କଂଗ୍ରେସର କଲିକତା ଅଧିବେଶନରେ ସାଧାରଣ ସଭାପତି ହୋଇଥିଲେ । ପାକିସ୍ତାନକୁ ଫେରିଯିବା ପରେ ମଧ୍ୟ ୧୯୫୮ ମସିହାରେ କାନାଡ଼ାର ଟରେଣ୍ଟୋଠାରେ ଅନୁଷ୍ଠିତ ରାଜ୍ୟଗୋଷ୍ଠୀ ବିଶ୍ୱବିଦ୍ୟାଳୟ ସମ୍ମିଳନୀରେ ତାଙ୍କ ସହିତ ମୋର ଦେଖା ହୋଇଥିଲା । ସେଠାରେ କ୍ରାଇଷ୍ଟ'ସ୍ କଲେଜର ମାଷ୍ଟର ଡ଼କ୍ଟର ସି. ଡବ୍ଲ୍ୟୁ. ଡାଉନସ୍‌ଙ୍କ ସହିତ ମଧ୍ୟ ଆମର ସାକ୍ଷାତ୍ ହେଲା । ଏଠାରେ ମୁଁ ଉଲ୍ଲେଖ କରିପାରେ ଯେ ଡକ୍ଟର ଡାଉନସ୍ ଆମଠାରୁ ଅଳ୍ପ କେତେ ବର୍ଷ ସିନିଅର୍ ଥିଲେ ଓ ଜଣେ ଭାଷାତତ୍ତ୍ୱବିତ୍ ଥିଲେ । ଫ୍ରାନ୍ସକୁ ଯିବାପାଇଁ ମୋର ଇଚ୍ଛା ଥିବାରୁ ମୁଁ ଡକ୍ଟର ଡାଉନସ୍‌ଙ୍କଠାରୁ ଫରାସୀ ଭାଷା ଶିକ୍ଷା କରୁଥିଲି । ଟରେଣ୍ଟୋରେ ତାଙ୍କୁ ଭେଟିବା ବଡ଼ ଆନନ୍ଦଦାୟକ ହୋଇଥିଲା ।



# କେମ୍ବ୍ରିଜର ବନ୍ଧୁଗୋଷ୍ଠୀ

ଏଠାରେ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ ଯେ ଟରେଣ୍ଟୋରେ ଥିବା-ବେଳେ ଭାରତୀୟ ଛାତ୍ରମାନେ କେତେଜଣ ଭାରତୀୟ କୁଳପତିଙ୍କୁ ଏକ ଉତ୍ସବକୁ ନିମନ୍ତ୍ରଣ କରିଥିଲେ । କଥାଭାଷା ପ୍ରସଙ୍ଗରେ ସେମାନେ କହିଲେ ଆମେରିକାରେ କାମ କରିବାର ଏତେ ସୁବିଧା ଅଛି ଏବଂ ଏପରି ଭଲ ପଇସା ମିଳୁଛି ଯେ ସେମାନେ ଭାରତକୁ ଫେରି ଯିବାକୁ ଇଚ୍ଛୁକ ନୁହନ୍ତି । ମୁଁ କହିଲି, ଭାରତ ଉଚ୍ଚ ସ୍ତରର ଗବେଷଣାପାଇଁ ଏଭଳି ସୁବିଧା ବା ବେତନ ଦେଇ ପାରିବ ନାହିଁ, ଯାହା କି ଆମେରିକା ଦେଉଛି । ତାହା ଆମେ ବୁଝୁଛୁ; କିନ୍ତୁ ଭାରତୀୟ ଛାତ୍ରମାନଙ୍କର ସେମାନଙ୍କ ମାତୃଭୂମି ପ୍ରତି କର୍ତ୍ତବ୍ୟ ଅଛି । ସେମାନେ ଭାରତକୁ ଫେରିଯାଇ ଦେଶର ପ୍ରଗତିରେ ସାହାଯ୍ୟ କରିବା ବାଞ୍ଛନୀୟ । ସେମାନେ ଏ କଥା ମଧ୍ୟ ବୁଝିବା ଉଚିତ ଯେ କ୍ରୟ ଶକ୍ତିର ବିଚାରରେ ଗୋଟିଏ ଡଲାର୍ ଗୋଟିଏ ଟଙ୍କା ସହିତ ସମାନ (ସେତେବେଳେ ଜିନିଷପତ୍ର ଦରଦାମର ତୁଳନାତ୍ମକ ବିଚାରରେ ମୁଁ ଏହା କହିଥିଲି । ବର୍ତ୍ତମାନ ଅବସ୍ଥା ବଦଳି ଗଲାଣି) ।

## କ୍ରାଇଷ୍ଟ'ସ୍ କଲେଜ

ବର୍ତ୍ତମାନ ମୁଁ ପୁଣି କେମ୍ବ୍ରିଜ ବେଳକୁ ଫେରିଯାଉଛି । କେମ୍ବ୍ରିଜରେ ଥିବାବେଳେ ମୋର ସମସାମୟିକ ବ୍ୟକ୍ତିମାନଙ୍କ ସମ୍ପର୍କରେ ଉଲ୍ଲେଖ କରିବାବେଳେ କ୍ରାଇଷ୍ଟ'ସ୍ କଲେଜରେ ଥିବା ମୋର ବନ୍ଧୁମାନଙ୍କ ସମ୍ପର୍କରେ ପ୍ରଥମରେ କହିରଖେ । ପରେ ଅନ୍ୟ କଲେଜରେ ପଢୁଥିବା ବନ୍ଧୁମାନଙ୍କ ସମ୍ପର୍କରେ କହିବି । ମୁଁ ଆସାମରୁ ଯାଇଥିବା ଇନାମୁଲ୍ ମଜିଦ୍‌ଙ୍କ କଥା ପୂର୍ବରୁ ଉଲ୍ଲେଖ କରିଛି । ଆମେମାନେ ପରସ୍ପରର ଅତି ଘନିଷ୍ଠ ବନ୍ଧୁ ହୋଇଥିଲୁ । ଥରେ ଗୋଟିଏ ଛୁଟିରେ ଭୁବନାନନ୍ଦ ଦାସ ବ୍ରିଷ୍ଟଲ୍‌କୁ ଆମକୁ ନିମନ୍ତ୍ରଣ କରିଥିଲେ । ଶ୍ରୀ ଦାସ ଓ୍ୱାଟ୍‌ଫୋର୍ଡ୍ ପରିବାରରେ ରହୁଥିଲେ । ଶ୍ରୀ ସଚ୍ଚିଦାନନ୍ଦ ରାୟ, ମଜିଦ୍ ଓ ମୁଁ ଛୁଟିର କିଛି ସମୟ ଶ୍ରୀ ବି. ଦାସଙ୍କ ସହିତ କଟାଇଥିଲୁ । ସେଠାରେ ମିସ୍ ଓ୍ୱାଟ୍‌ଫୋର୍ଡ୍‌ଙ୍କ ସହିତ ମଜିଦ୍‌ଙ୍କର ସାକ୍ଷାତ ହେଲା । ପରେ ଉଭୟ ପରସ୍ପର ସହିତ ବିବାହ ସୂତ୍ରରେ ଆବଦ୍ଧ ହେଲେ ।

ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର କୁଳପତି ଓ କ୍ରାଇଷ୍ଟ'ସ୍ କଲେଜର ଜଣେ ପୂର୍ବତନ ଛାତ୍ର ସାର୍ ରାମୁନ୍ନି ମେନନ୍‌ଙ୍କ ଭାଇ ଶ୍ରୀକୃଷ୍ଣ ମେନନ୍ ମୋ'ଠାରୁ ଗୋଟିଏ ବର୍ଷ ସିନିଅର୍ ଥିଲେ । ସେ ଭାରି ସରଳ, ନିରାଡ଼ମ୍ବର ଲୋକ ଥିଲେ ଓ ମୋ'ର ଯେତେଦୂର ମନେ ପଡ଼ୁଛି, ଇତିହାସ ଅଧ୍ୟୟନ କରୁଥିଲେ । ମୁଁ ଆସିବାର ବହୁ ପୂର୍ବରୁ ସେ ଭାରତକୁ ଫେରି ଆସିଥିଲେ ଓ ମାନ୍ଦ୍ରାଜର ଶିକ୍ଷା ବିଭାଗରେ ଯୋଗଦେଇ ଇନ୍‌ସପେକ୍ଟର୍ ଅଫ ସ୍କୁଲ୍‌ସ୍ ଓ ପରେ ପାଲଘାଟର ଏକ କଲେଜରେ ପ୍ରିନ୍‌ସିପାଲ ହୋଇଥିଲେ । ଏଇ କେତେ ବର୍ଷ ତଳେ ତାଙ୍କର ମୃତ୍ୟୁ ହେଲା ।

ବରୋଦାର ଗାଇକଓ୍ୱାଡ଼୍ ପରିବାରର ଭଦ୍ର ସିଂ ଗାଇକଓ୍ୱାଡ଼୍ ମୋ'ଠାରୁ ଜୁନିଅର୍ ଥିଲେ । ସେ ଜଣେ ଖେଳୁଆଡ଼୍ ଓ ଭାରି ମେଳାପୀ ଲୋକ ଥିଲେ । ବରୋଦାକୁ ଫେରିଆସିବାପରେ ସେ ଶାସନ କ୍ଷେତ୍ରରେ କାର୍ଯ୍ୟକରି ଶେଷକୁ ବରୋଦାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ଭାରତକୁ ଫେରି ଆସି ବିଜ୍ଞାନ କଂଗ୍ରେସ ଅଧିବେଶନରେ ଯୋଗ ଦେବା-ପାଇଁ ମୁଁ ବରୋଦା ଯାଇଥିଲି । ସେତେବେଳେ ଶ୍ରୀ ଭଦ୍ର ସିଂ ଗାଇକ୍‌ୱାଡ଼୍ ଶିକ୍ଷାମନ୍ତ୍ରୀ ଥିଲେ ଓ ତାଙ୍କ ସହିତ ମୋ'ର ପୂର୍ବ ସମ୍ପର୍କ ଦୃଢ଼ୀଭୂତ କରିବାର ସୁଯୋଗ ମୁଁ ପାଇ-ଥିଲି । ମୋ'ପରେ ବହୁ ଭାରତୀୟ ଛାତ୍ର କ୍ରାଇଷ୍ଟ'ସ୍ କଲେଜରେ ଯୋଗଦେଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଚଟ୍ଟଗାଙ୍ଗର ଶ୍ରୀ ଅନୱାରୁଲ୍ ଅଜିମ୍ । କଲେଜର ଶୃଙ୍ଖଳା ଓ ନିୟମାବଳୀ ସମ୍ପର୍କରେ ଚର୍ଚ୍ଚା କଲାବେଳେ ମୁଁ ତାଙ୍କ କଥା ଲେଖିଥିଲି । ସବୁ ଦିନ ରାତି ଦଶଟା ପୂର୍ବରୁ ସେ କଲେଜକୁ ଫେରିଆସୁଥିଲେ ଓ କେବେହେଲେ ବିଳମ୍ବ ଜନିତ ଜରିମାନା ଦେଇ ନ ଥିଲେ । ଥରେ ଟିନ୍ ତାଙ୍କୁ ଡାକି ପଚାରିଲେ—ତାଙ୍କର କ'ଣ କେମ୍ବ୍ରିଜରେ କୌଣସି ବନ୍ଧୁ ନାହାନ୍ତି ? ସେ ତ କେବେ ହେଲେ ଦଶଟା ପରେ ବାହାରେ ରହୁନାହାନ୍ତି !

ଅଳ୍ପ କେତେ ମାସ ତଳେ କ୍ରାଇଷ୍ଟ'ସ୍ କଲେଜର ସିନିଅର୍ ଟ୍ୟୁଟର୍ ଅଜିମ୍‌ଙ୍କ ସମ୍ପର୍କରେ ଜାଣିବାପାଇଁ ମୋ' ପାଖକୁ ଲେଖିଥିଲେ । ବହୁଦିନଧରି ଅଜିମ୍‌ଙ୍କ ଖବର ମୁଁ ରଖି ନ ଥିଲେ ମଧ୍ୟ କଲିକତାରେ ଥିବା ପାକିସ୍ଥାନର କନସଲ୍ ଜେନେରାଲ୍‌ଙ୍କ ପାଖକୁ ମୁଁ ଜାଣିବା ପାଇଁ ଲେଖିଲି । ସେଠାରୁ ଉତ୍ତର ଆସିଲା, ବାରିଷ୍ଟର ଅନୱାରୁଲ୍ ଅଜିମ୍‌ଙ୍କର ଅଳ୍ପ କେତେ ବର୍ଷ ତଳେ ପରଲୋକ ହୋଇଯାଇଛି ।

ମାନ୍ଦ୍ରାଜର ଡକ୍ଟର ଏସ୍. ପରମେଶ୍ୱରନ୍ (ସେ ନିଜକୁ ଏସ୍. ପି. ଓ୍ୱାରନ୍ ବୋଲି କହୁଥିଲେ) ପଦାର୍ଥ ବିଜ୍ଞାନରେ ଏକ ଗବେଷକ ଛାତ୍ରଭାବରେ ଯୋଗଦେଇଥିଲେ ।

କାଚ ନିର୍ମାଣରେ ସେ ଜଣେ ବିଶେଷଜ୍ଞ ଥିଲେ ଓ ମୋର ଗବେଷଣା କାଳରେ କାଚର ଯନ୍ତ୍ରପାତି ନିର୍ମାଣରେ ମୁଁ ତାଙ୍କର ସାହାଯ୍ୟ ନେଉଥିଲି । ସେ ଭାରତକୁ ଆସି ମାନ୍ଦ୍ରାଜର ପ୍ରେସିଡେନ୍‌ସି କଲେଜରେ ପଦାର୍ଥବିଜ୍ଞାନ ଅଧ୍ୟାପକ ଭାବରେ ଯୋଗଦେଇଥିଲେ । ପ୍ରେସିଡେନ୍‌ସି କଲେଜର କ୍ଲକ୍ ଟାଓ୍ୱାର୍ ତାଙ୍କର ସ୍ମୃତି ନିର୍ଦ୍ଦେଶକ । କାରଣ ଏହାର ନିର୍ମାଣପାଇଁ ସେ ଦାୟୀ ଥିଲେ । ଅଳ୍ପଦିନ ତଳେ ତାଙ୍କର ମୃତ୍ୟୁ ହେଲା ।

ତାଙ୍କପରି ଆଉଜଣେ ଜଣେ ଗବେଷକ ଛାତ୍ର ଥିଲେ—ପଞ୍ଜାବର ଡକ୍ଟର କେ. ଏଲ୍. ମୌଡ୍‌ଗିଲ୍ । ଡକ୍ଟର ମୌଡ୍‌ଗିଲ୍ ରହାଯ୍ନବିଜ୍ଞାନରେ ଗବେଷଣା କରୁଥିଲେ ଓ ଭାରତକୁ ଫେରିଆସିବା ପରେ ସରକାରୀ ଚାକିରିରେ ଯୋଗଦେଇ ଶେଷକୁ କେରଳ ରାଜ୍ୟରେ ଘରଦ୍ୱାର କରି ରହିଲେ ।

ଭାରତୀୟଙ୍କ ବ୍ୟତୀତ ସିଂହଳର ଦୁଇ ଜଣ ଛାତ୍ର ଥିଲେ । ସେମାନେ ହେଲେ ମୋଠାରୁ ସିନିଅର୍ ଥିବା ଶ୍ରୀ ତ୍ୟାଗରାଜ ଏବଂ ଜୁନିଅର୍ ଲାୟନେଲ କୋଟେଲୱାଲ (ପରେ ସାର୍ ହୋଇଥିଲେ) । ଶ୍ରୀ ତ୍ୟାଗରାଜ ବାରିଷ୍ଟରୀ ପାସ୍ କରିବା ପରେ ସିଂହଳକୁ ଫେରିଆସି ପାର୍ଲିଆମେଣ୍ଟ ସଭ୍ୟ ହୋଇଥିଲେ । ଏବେ ମଧ୍ୟ ସେ ଓକିଲାତି କରୁଛନ୍ତି । ସାର ଲାୟନେଲ୍ କୋଟେଲୱାଲ ଜଣେ ଖେଳାଳି ଥିଲେ । ମୋର କେମ୍ବ୍ରିଜ ଛାଡ଼ିବା ବେଳକୁ ସେ ସେଠାରେ ରହିଥିଲେ ।

କ୍ରାଇଷ୍ଟ'ସ୍ କଲେଜ ଏକ ବିଶ୍ୱଜନୀନ ଶିକ୍ଷାନୁଷ୍ଠାନ ଥିଲା । ପୃଥିବୀର ସବୁ ଅଞ୍ଚଳରୁ ଛାତ୍ର ଏଠାକୁ ପଢ଼ିବାକୁ ଆସୁଥିଲେ । ଆଫ୍ରିକାର ସ୍ୱର୍ଣ୍ଣ ଉପକୂଳରୁ ଶ୍ରୀ ଏଡ୍‌ୱାର୍ଡ୍ ଟାଗୋ, ମୁଁ ଯେଉଁ ବର୍ଷ ଯାଇଥିଲି ସେହି ବର୍ଷ ଆସି ଯୋଗଦେଇଥିଲେ । ପରେ ସେ ବାରିଷ୍ଟର ହୋଇ ତାଙ୍କ ଦେଶକୁ ଫେରିଗଲେ । ତାଙ୍କର ବାପା ପ୍ରାମୀ ବାଣିଜ୍ୟ କ୍ଷେତ୍ରରେ ଗୋଟିଏ ବଡ଼ ବ୍ୟବସାୟ ପ୍ରତିଷ୍ଠାନର ମାଲିକ ଥିଲେ । ମୁଁ ଟରେଣ୍ଟୋଠାରେ ଆଫ୍ରିକାର ଜଣେ ଭଦ୍ରଲୋକଙ୍କୁ ଭେଟିଥିଲି । ଟାଗୋଙ୍କ ସମ୍ପର୍କରେ ପଚାରିବାରୁ ସେ କହିଲେ, ସେ ତାଙ୍କ ବାପାଙ୍କ ବ୍ୟବସାୟ ପ୍ରତିଷ୍ଠାନରେ ଯୋଗ ଦେଇଥିଲେ । ଅଳ୍ପ କେତେବର୍ଷ ତଳେ ତାଙ୍କର ମୃତ୍ୟୁ ହୋଇଛି । ଚୀନ, କୋରିଆ ଓ ସିଙ୍ଗାପୁରରୁ ମଧ୍ୟ ଛାତ୍ରମାନେ ଏଠାକୁ ଆସୁଥିଲେ ।

## ଅନ୍ୟ କଲେଜ

ବର୍ତ୍ତମାନ ମୁଁ ଅନ୍ୟ କଲେଜରେ ଅଧ୍ୟୟନ କରୁଥିବା ବନ୍ଧୁମାନଙ୍କ ସମ୍ପର୍କରେ ଉଲ୍ଲେଖ କରିବି । ପ୍ରଥମେ ହେଉଛି ଏମାନୁଏଲ୍ କଲେଜ । କାରଣ ଏହି କଲେଜ

କ୍ରାଇଷ୍ଟ'ସ୍ କଲେଜର ନିକଟବର୍ତ୍ତୀ ଏବଂ ଏହି କଲେଜର ପ୍ରତିଷ୍ଠାତା କ୍ରାଇଷ୍ଟ'ସ୍ କଲେଜର ଜଣେ ପୁରାତନ ଛାତ୍ର । ତାପରେ ପୁଣି ବହୁ ବିଖ୍ୟାତ ଭାରତୀୟ ଛାତ୍ର ଏହି କଲେଜରେ ପଢ଼ୁଥିଲେ । ସେମାନଙ୍କ ମଧ୍ୟରୁ ଓଡ଼ିଶାର ଶ୍ରୀ ଶ୍ୟାମଚନ୍ଦ୍ର ତ୍ରିପାଠୀ ଓ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ନାମ ଉଲ୍ଲେଖଯୋଗ୍ୟ । ସମସ୍ତଙ୍କ ମଧ୍ୟରେ ସିନିଅର୍ ଛାତ୍ର ଥିଲେ କେରଳର ଜର୍ଜ ମାଥାଇ । ସେ ମୋ'ଠାରୁ ସିନିଅର୍ ଥିଲେ ଏବଂ ମୁଁ କଲେଜ କୋଠରୀ ଛାଡ଼ି ବସାଘରେ ରହିବାବେଳେ, ସେ ମଧ୍ୟ ସେହି ବସାଘରେ ରହୁଥିଲେ । ସେ ଜଣେ ଖୁବ୍ ଭଲ ଛାତ୍ର ଥିଲେ ଏବଂ ମୋ ମତରେ ସେ ଥିଲେ ଜଣେ ଧର୍ମାନ୍ଧ ଖ୍ରୀଷ୍ଟାନ୍ । ଲୋକେ କହନ୍ତି ସେ ତାଙ୍କର ଚିହ୍ନଟ କାର୍ଡରେ ତାଙ୍କର ଖ୍ରୀଷ୍ଟାନ ନାମକୁ ଲେଖନ୍ତି, ଯେପରିକି ଲୋକେ ଜାଣିବେ ଯେ ସେ ଜଣେ ଖ୍ରୀଷ୍ଟାନ । କିନ୍ତୁ ଏହା ଠିକ୍ ସତ୍ୟ ନୁହେଁ; ସେ ଏପରି ଲେଖିବାର କାରଣ, ଏହା ହୋଇପାରେ ଯେ ତାଙ୍କର ଭାଇ ଥିଲେ ଶ୍ରୀ ଜନ୍ ମାଥାଇ ଯେକି ପରେ ଭାରତର ଅର୍ଥମନ୍ତ୍ରୀ ହୋଇଥିଲେ ଓ ସେତେବେଳେ ଅକ୍ସଫୋର୍ଡ୍‌ରେ ଅଧ୍ୟୟନ କରୁଥିଲେ । ତାଙ୍କ ଭାଇଙ୍କଠାରୁ ସେ ହୁଏତ ବାରି ହେବାପାଇଁ ଚାହୁଁଥିଲେ । ଆମେ ଦୁହେଁ ଏକାଠି ପ୍ରାତଃଭୋଜନ କରୁଥିଲୁ ଓ ଦୁଇ ଜଣ ବେଶ୍ ବନ୍ଧୁ ଥିଲୁ । ଥରେ ଗୋଟିଏ ଘଟଣାରେ ସେ ଭାରି ବିରକ୍ତ ହୋଇଗଲେ । ଆମ ଉଭୟଙ୍କର ବନ୍ଧୁ ଥିବା ସୋଲନ୍‌ର ଶ୍ରୀ ସି. ଏଲ୍. ମାଥର୍ କେମ୍ବ୍ରିଜ ଛାଡ଼ି ଯାଉଥିଲେ । ମାଥାଇ ଓ ମୋ' ସମେତ ଷ୍ଟେସନରେ ତାଙ୍କୁ ବିଦାୟ ସମ୍ବର୍ଦ୍ଧନା ଦେବାପାଇଁ ତାଙ୍କର ବହୁ ବନ୍ଧୁ ଯାଇଥିଲେ । ଗାଡ଼ି ଆସିବାରେ ଡେରି ହୋଇଗଲା । ମାଥାଇ କହିଲେ, ମାଥୁର୍ ଟ୍ରେନ୍ ପହଞ୍ଚିବାରେ ବିଳମ୍ବ ହେଉଛି କାରଣ ଗାଡ଼ି ତୁମକୁ ନେବାପାଇଁ ସ୍ୱର୍ଗରୁ ଆସୁଛି । ମୁଁ ପାଖରେ ଠିଆ ହୋଇଥିଲି । ଥଟ୍ଟାରେ କହିଲି, "କିନ୍ତୁ ଗାଡ଼ିଟା ଅନ୍ୟ ଆଡ଼େ ଯାଉଛି ଯେ ।" ସମସ୍ତେ ହସିଲେ; କିନ୍ତୁ ମୁଁ ଦେଖିଲି ମାଥାଇଙ୍କର ଖ୍ରୀଷ୍ଟାନ୍ ହୃଦୟରେ ଏହା ହୁଏତ ଆଘାତ ଦେଲା । ଆମେ ଏକା ବସାଘରେ ରହୁଥିଲେ ମଧ୍ୟ ସେ ବହୁଦିନ ପର୍ଯ୍ୟନ୍ତ ମୋ ସହିତ କଥାଭାଷା କରିନଥିଲେ । ମାଥାଇ ଭାରତକୁ ଫେରି ଲାହୋରଠାରେ ପଞ୍ଜାବ ବିଶ୍ୱବିଦ୍ୟାଳୟର ପ୍ରାଣୀବିଜ୍ଞାନ ଅଧ୍ୟାପକରୂପେ ଯୋଗ ଦେଇଥିଲେ । ପରେ ଅସୁସ୍ଥ ହୋଇ ସୁଇଜରଲ୍ୟାଣ୍ଡ ଗଲେ । ସେଠାରେ ଥିବାବେଳେ ସେ ତାଙ୍କର ନର୍ସ୍‌କୁ ବିବାହ କରିଥିଲେ ଏବଂ ଶେଷରେ ଆତ୍ମହତ୍ୟା କଲେ ।

# ଫ୍ରାଙ୍କ୍ ସ୍ମାର୍ଟ ଛାତ୍ରବୃତ୍ତି

ସେହି କଲେଜରେ ପରବର୍ତ୍ତୀ ସିନିଅର୍ ହେଲେ ଡକ୍ଟର ବୀରବଲ ସାହ୍ନି । ସେ ପଞ୍ଜାବର ଲାହୋର ସରକାରୀ କଲେଜର ଅଧ୍ୟାପକ ରୁଚିରାମ ସାହ୍ନିଙ୍କର ପୁତ୍ର ଥିଲେ । ସାହ୍ନି ଉଦ୍ଭିଦବିଜ୍ଞାନର ଦ୍ୱିତୀୟ ଭାଗରେ ଅଧ୍ୟୟନ କରୁଥିଲେ ଓ ପରେ ସେହି ବିଭାଗରେ ଗବେଷଣା କଲେ । ପରୀକ୍ଷାଗାରରେ ଆମ ଦୁଇଜଣଙ୍କର ସାକ୍ଷାତ୍ ହେଉଥିଲା ଓ ଆମେ ଘନିଷ୍ଠ ବନ୍ଧୁ ହୋଇଗଲୁ । ପରେ ମୁଁ ଟ୍ରାଇପସ୍ ଦ୍ୱିତୀୟ ଭାଗ ଶେଷ କରିବା ପରେ ବିଶ୍ୱବିଦ୍ୟାଳୟ ପକ୍ଷରୁ ଉଦ୍ଭିଦ ବିଜ୍ଞାନରେ ଗବେଷଣା ପାଇଁ ଦିଆଯାଉଥିବା ଫ୍ରାଙ୍କ୍ ସ୍ମାର୍ଟ ଛାତ୍ରବୃତ୍ତି ଖାଲି ପଡ଼ିଲା । ଏଥିପାଇଁ ଆବେଦନ କରିବା ନିମନ୍ତେ ସାହ୍ନି ମୋତେ ପରାମର୍ଶ ଦେଲେ । ଜଣେ ଭାରତୀୟଙ୍କୁ ସେମ.ନେ ଏ ବୃତ୍ତି ଦେବା ବିଷୟରେ ମୋର ସନ୍ଦେହ ଥିଲା । ଉଦ୍‌ଭିଦ ବିଜ୍ଞାନ ଅଧ୍ୟାପକ ସାର୍ ଆର୍ଥର୍ ସିୱାର୍ଡ ଲୁପ୍ତ ହୋଇ-ପଡ଼ିଥିବା ଉଦ୍ଭିଦମାନଙ୍କ ବିଷୟରେ ଜଣେ ବିଶେଷଜ୍ଞ ଥିଲେ । ସାହ୍ନି ତାଙ୍କର ନିର୍ଦ୍ଦେଶରେ ଗବେଷଣା କରୁଥିଲେ । ଅଧ୍ୟାପକ ସିୱାର୍ଡ ମୋତେ ପରାମର୍ଶ ଦେଲେ ଯେ ଏହି ଲୁପ୍ତପ୍ରାୟ ଉଦ୍ଭିଦମାନଙ୍କ ବିଷୟରେ ଗବେଷଣା କରିବାପାଇଁ ମୁଁ ଆବେଦନ କରିବି । ମାତ୍ର ମୁଁ ଉଦ୍ଭିଦ ଶରୀରତତ୍ତ୍ୱ ସମ୍ପର୍କରେ ଆଗ୍ରହୀ ଥିବାଯୋଗୁ ତାହା ଉଲ୍ଲେଖ ନ କରି ଅନ୍ୟ ଗୋଟିଏ ବିଷୟ ଉଲ୍ଲେଖ କରିବା ଉଚିତ ମନେକଲି ନାହିଁ । ତେଣୁ ସାହ୍ନିଙ୍କର ପରାମର୍ଶ ଗ୍ରହଣ କରି ମୋ ଦରଖାସ୍ତରେ ଲେଖିଲି ଯେ ଡକ୍ଟର ଏଫ୍. ଏଫ୍. ବ୍ଲାକ୍‌ମାନ୍‌ଙ୍କ ନିର୍ଦ୍ଦେଶରେ ଉଦ୍ଭିଦ ଶରୀରତତ୍ତ୍ୱ ସମ୍ପର୍କରେ ଗବେଷଣା କରିବି । ଭାଗ୍ୟକୁ ଅଧ୍ୟାପକ ସିୱାର୍ଡ ଫ୍ରାଙ୍କ୍ ସ୍ମାର୍ଟ ଛାତ୍ରବୃତ୍ତି ମୋତେ ପ୍ରଦାନ କଲେ । ଏହି ଛାତ୍ରବୃତ୍ତିର ପଛରେ ବେଶ୍ ଗୋଟାଏ ଇତିହାସ ଅଛି । ଫ୍ରାଙ୍କ ସ୍ମାର୍ଟ ଗନ୍‌ଭିଲେ ଓ କେମ୍ବ୍ରିଜର କାୟସ୍ କଲେଜରେ ଉଦ୍ଭିଦ ବିଜ୍ଞାନ ଛାତ୍ର ଥିଲେ । ଜଣେ ମେଧାବୀ ଓ କୃତୀ ଛାତ୍ର ରୂପେ ସେ ପରିଚିତ ଥିଲେ । ଅଳ୍ପ ବୟସରେ ସେ ମରିଗଲେ । ତାଙ୍କର ପିତା ପୁତ୍ରର ସ୍ମୃତି ରକ୍ଷାପାଇଁ ଦୁଇଟି ଛାତ୍ରବୃତ୍ତି ଦେଇଥିଲେ ଓ ତାହାର ନାମ ଥିଲା ଫ୍ରାଙ୍କ୍ ସ୍ମାର୍ଟ ଛାତ୍ରବୃତ୍ତି । ତାହାମଧ୍ୟରୁ ଗୋଟିଏ କାୟସ୍ କଲେଜ ଓ ଅନ୍ୟଟି ବିଶ୍ୱବିଦ୍ୟାଳୟ ସହିତ ସଂଲଗ୍ନ ଥିଲା । ଏହାବ୍ୟତୀତ ବିଶ୍ୱବିଦ୍ୟାଳୟରେ ସେ ଆଉ ଗୋଟିଏ ପ୍ରାଇଜ୍ ଖଞ୍ଜି ଥିଲେ । ଉଦ୍ଭିଦ ବିଜ୍ଞାନରେ ଟ୍ରାଇପସ୍ ପ୍ରଥମ ଭାଗ ବା ଦ୍ୱିତୀୟ ଭାଗ ହେଉ ଯେ ସବୁଠାରୁ ବେଶି ନମ୍ବର ରଖୁଥିଲା, ତାକୁ ଏହି ପୁରସ୍କାର ମିଳୁଥିଲା । ଯେଉଁ ଭାରତୀୟମାନେ ଏହି ପୁରସ୍କାର ପାଇଥିଲେ, ମୋର ସ୍ମରଣରେ ସେମାନେ ହେଉଛନ୍ତି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଆର୍.ଏସ୍. ଇନାମ୍‌ଦାର୍, ଭାରତର ପୂର୍ବତନ ଅର୍ଥମନ୍ତ୍ରୀ ସି.ଡି ଦେଶମୁଖ ଏବଂ ମୁଁ ।

# ରବୀନ୍ଦ୍ର ନାଥ ବାନାର୍ଜୀ

ରବୀନ୍ଦ୍ରନାଥ ବାନାର୍ଜୀଙ୍କୁ ମୁଁ ଆଗରୁ ଭାରତରେ ଜାଣିଥିଲି । ମୁଁ କ୍ରାଇଷ୍ଟସ୍ କଲେଜରେ ଯୋଗ ଦେବାର ଅଳ୍ପକାଳ ପରେ ସେ ଏମାନୁଏଲ୍ କଲେଜରେ ଯୋଗ ଦେଲେ । ସେ ଦର୍ଶନ ଶାସ୍ତ୍ରରେ ଅଧ୍ୟୟନ କରୁଥିଲେ ଓ ଆଇ. ସି. ଏସ୍. ପାଇଁ ପ୍ରସ୍ତୁତ ହେଉଥିଲେ । ଆମେ ଘନିଷ୍ଠ ବନ୍ଧୁ ହୋଇଗଲୁ । ସେ ଆଇ. ସି. ଏସ୍. ପରୀକ୍ଷାରେ କୃତୀ ହେଲେ । ଘୋଡ଼ା ଚଢ଼ା ଶିଖିବାବେଳେ ଏକ ଦୁର୍ଘଟଣାରେ ତାଙ୍କର ଡାହାଣ ହାତ ଭାଙ୍ଗିଗଲା । ଭାରତକୁ ଫେରିବା ପରେ ମଧ୍ୟ ଆମ ଉଭୟଙ୍କର ବନ୍ଧୁତା ପୂର୍ବପରି ଥିଲା । ତାଙ୍କୁ ମଧ୍ୟପ୍ରଦେଶରେ ଯୋଗ ଦେବାକୁ ହେଲା । ସେ ଭାରତ ସରକାରଙ୍କର ଘରୋଇ ବିଭାଗର ସେକ୍ରେଟେରୀ ହୋଇଥିଲେ ଓ ୟୁନିଅନ୍ ପବ୍ଲିକ୍ ସର୍ଭିସ୍ କମିଶନ୍‌ର ଚେୟାରମ୍ୟାନରୂପେ ଅବସର ଗ୍ରହଣ କଲେ । ତାଙ୍କୁ ସି. ଆଇ. ଇ. ଉପାଧି ମିଳିଥିଲା । ତାଙ୍କର ଅଗାଧ ପାଣ୍ଡିତ୍ୟ ଓ କଠୋର ଶୃଙ୍ଖଳାଜ୍ଞାନଯୋଗୁଁ ଶାସନ ବିଭାଗରେ ସେ ସୁନାମ ଅର୍ଜନ କରିଥିଲେ । ସେ ଯେତେବେଳେ ଚେୟାରମ୍ୟାନ୍ ଥିଲେ ମୋତେ ୟୁନିଅନ୍ ପବ୍ଲିକ୍ ସର୍ଭିସ୍ କମିଶନ୍‌ର ସଭ୍ୟ ଭାବରେ ଯୋଗଦେବାପାଇଁ ଡକରା ଆସିଥିଲା । କିନ୍ତୁ ମୁଁ ତାହା ଗ୍ରହଣ କଲି ନାହିଁ । ଶ୍ରୀ ବାନାର୍ଜୀ ଦିଲ୍ଲୀରେ ଅବସ୍ଥାନ କରୁଥିବାବେଳେ ଅନେକ ସମୟରେ ତାଙ୍କ ସହିତ ମୋର ସାକ୍ଷାତ୍ ହେଉଥିଲା ଓ ଆମର ଅତୀତର କଥା ଆମେ ଆଲୋଚନା କରୁଥିଲୁ ।

ମୋର ବର୍ଷକ ପରେ ଓଡ଼ିଶାର ଦ୍ୱିତୀୟ ସହକାରୀ ବୃତ୍ତିଧାରୀ ଶ୍ରୀ ଶ୍ୟାମଚନ୍ଦ୍ର ତ୍ରିପାଠୀ ଏମାନୁଏଲ୍ କଲେଜରେ ଯୋଗଦେଲେ । ଟ୍ରାଇପସ୍ ପ୍ରଥମ ଭାଗ ଗଣିତ ଓ ଦ୍ୱିତୀୟ ଭାଗ ପଦାର୍ଥବିଜ୍ଞାନପାଇଁ ସେ ପ୍ରସ୍ତୁତ ହେଉଥିଲେ । ଭାରତରେ ଶ୍ରୀ ତ୍ରିପାଠୀଙ୍କର ଶିକ୍ଷାଗତ ରେକର୍ଡ୍ ଖୁବ୍ ଭଲ ଥିଲା । କଲିକତାର ପ୍ରେସିଡେନ୍ସି କଲେଜରେ ସେ ସବୁ କ୍ଷେତ୍ରରେ ଶ୍ରେଷ୍ଠ ତଥା କୃତୀଛାତ୍ରରୂପେ ବିବେଚିତ ହୋଇଥିଲେ ଓ ସେଥିପାଇଁ ଏକ ବୃତ୍ତି ଲାଭ କରିଥିଲେ । କେମ୍ବ୍ରିଜରେ ସେ ଟ୍ରାଇପସ୍ ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗରେ ଦ୍ୱିତୀୟ ଶ୍ରେଣୀ ପାଇଲେ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ କେତେକ ମେଧାବୀ ଭାରତୀୟ ଛାତ୍ର କେମ୍ବ୍ରିଜକୁ ଆସି ଭଲ କରି ନାହାନ୍ତି । ବୋଧହୁଏ ପରିବାରଠାରୁ ଦୂରରେ ରହିବା, କମ୍ ବିଶୃଙ୍ଖଳା ଓ ଅଧିକ ସ୍ୱାଧୀନତା ଲାଭକରିବା ତଥା ଭାବପ୍ରବଣ ବୟସରେ ଆର୍ଥିକ

ସ୍ୱାଚ୍ଛନ୍ଦ୍ୟ ଉପଭୋଗ କରିବାକ୍ଷ୍ୟାରୁ ସେମାନେ ଭଲ କରିପାରନ୍ତି ନାହିଁ । ଶ୍ରୀ ତ୍ରିପାଠୀ ୧୯୧୯ ମସିହାରେ ଭାରତକୁ ଫେରିଯାଇ ଅଳ୍ପକାଳପାଇଁ ରେଭେନ୍‌ସା କଲିଜିଏଟ୍ ସ୍କୁଲର ହେଡ୍‌ମାଷ୍ଟର୍ ହୋଇଥିଲେ ଓ ପରେ ରେଭେନ୍‌ସା କଲେଜରେ ପଦାର୍ଥବିଜ୍ଞାନ ଅଧ୍ୟାପକରୂପେ ଭାରତୀୟ ଏଡୁକେସନାଲ୍ ସର୍ଭିସ୍‌ରେ ଯୋଗ ଦେଲେ ।

## ସୁଭାଷଚନ୍ଦ୍ର ବୋଷ

ଏମାନୁଏଲ୍ କଲେଜର ଅନ୍ୟ ଜଣେ ବିଖ୍ୟାତ ଭାରତୀୟ ଛାତ୍ର ହେଉଛନ୍ତି ନେତାଜୀ ସୁଭାଷଚନ୍ଦ୍ର ବୋଷ, ଯେ କି ୧୯୧୭ ମସିହାରେ କେମ୍ବ୍ରିଜ ଆସିଲେ ।

ପ୍ରେସିଡେନ୍‌ସି କଲେଜର ଅଧ୍ୟାପକ ଓଟନ୍ (Oaten) ଭାରତୀୟମାନଙ୍କ ସମ୍ପର୍କରେ କେତେକ କୁତ୍ସାପୂର୍ଣ୍ଣ ମନ୍ତବ୍ୟ ପ୍ରକାଶ କରିବାରୁ ଯେଉଁ ଘଟଣା ଘଟିଲା, ସେଥିରୁ ମୁଁ ସୁଭାଷଚନ୍ଦ୍ରଙ୍କ ବିଷୟରେ ପୂର୍ବରୁ ଶୁଣିଥିଲି । କିନ୍ତୁ ୧୯୧୭ ମସିହାରେ ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଯୋଗଦେବା ପରେ ଯାଇ ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ୍ ହେଲା । ତାଙ୍କର ଦୁଇ ଜଣ ଭାଇ ସୁଧୀର ଓ ସୁନୀଲ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ମୋ' ସହିତ ଏକା ଶ୍ରେଣୀରେ ପଢୁଥିଲେ ! ୧୯୦୯ ମସିହାରେ ଆମେ ଏକାଠି ଏନ୍‌ଟ୍ରାନ୍‌ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲୁ ।

ସୁଭାଷ କେମ୍ବ୍ରିଜ ଯିବା ପୂର୍ବରୁ ତାଙ୍କ ଭାଇ ସୁଧୀର ମୋ ପାଖକୁ ଚିଠି ଲେଖିଥିଲେ ଯେ, ସେ ପହଞ୍ଚିଲେ ମୁଁ ତାଙ୍କର ତତ୍ତ୍ୱ ନେବି । ସେ କେମ୍ବ୍ରିଜରେ ପହଞ୍ଚିବାବେଳେ ମୁଁ ତାଙ୍କୁ ଭେଟିଲି । ଅନ୍ୟ ସ୍ଥାନ ପାଇବା ପର୍ଯ୍ୟନ୍ତ ସେ ମୋ ବସାଘରେ ରହିବାପାଇଁ ମୁଁ ତାଙ୍କୁ ଅନୁରୋଧ କଲି । ସେ ମୋ ସହିତ ପ୍ରାୟ ଏକ ସପ୍ତାହ ରହିଲେ । ପରେ ଏମାନୁଏଲ୍ କଲେଜରେ ଯୋଗ ଦେଇ ତାଙ୍କ ନିଜ କଲେଜ କୋଠରୀକୁ ଚାଲିଗଲେ । ଏପରି ଗୋଟିଏ ଦିନ ଯାଏ ନାହିଁ, ଯେଉଁଦିନ ତାଙ୍କ ସହିତ ମୋର ସାକ୍ଷାତ୍ ନ ହୁଏ । ମୋର ସାମାନ୍ୟ ସାହାଯ୍ୟକୁ ପସନ୍ଦ କରି ବନ୍ଧୁତାର ଚିହ୍ନ ସ୍ୱରୂପ ସେ ମୋତେ ଖଣ୍ଡିଏ ରୂପା ଗୁଆଣି ବାଡ଼ି ଉପହାର ଦେଇଥିଲେ । ମୁଁ ବହୁବର୍ଷ ଧରି ତାକୁ ସାଇତି ରଖିଥିଲି ।

ସେ ଯେ ଜଣେ ମେଧାବୀ ଛାତ୍ର ଥିଲେ, ତାହା ଜଣାଶୁଣା କଥା । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଯୋଗ ଦେବାର ନ'ମାସ ପରେ ସେ ଭାରତୀୟ ସିଭିଲ୍ ସର୍ଭିସ୍‌ରେ

ଯୋଗଦେଲେ । ଟ୍ରେନିଂ ପାଉଥିବାବେଳେ ସେ ନୈତିକ ବିଜ୍ଞାନରେ ଟ୍ରାଇପସ୍ (ଅନର୍ସ ପରୀକ୍ଷା) ପାସ୍ କଲେ । ଦିନେ ସେ ଆସି ମୋତେ କହିଲେ, ଆଇ. ସି. ଏସ୍. ଶିକ୍ଷାର୍ଥୀମାନଙ୍କୁ ଯେଉଁପରି ଉପଦେଶ ଦିଆଯାଉଛି ସେ ତା' ବିରୁଦ୍ଧରେ ଆପତ୍ତି କରିଛନ୍ତି । କୌଣସି ଏକ ସ୍ଥାନରେ ଉଲ୍ଲେଖ କରାଯାଇଛି ଯେ ଭାରତରେ ଆଇ. ସି. ଏସ୍. କର୍ମଚାରୀଙ୍କର ଘୋଡ଼ାକୁ ବୁଟ ଖାଇବାକୁ ଦିଆଯାଏ । କର୍ମଚାରୀମାନେ ମନେରଖିବା ଉଚିତ ଯେ, ବୁଟ ମଧ୍ୟ ଘୋଡ଼ାସଇସର ଖାଦ୍ୟ । ଏହାର ତାତ୍ପର୍ଯ୍ୟ ହେଉଛି, ସଇସ ଘୋଡ଼ାର ଖାଦ୍ୟକୁ ଚୋରି କରିପାରେ । ତେଣୁ କର୍ମଚାରୀମାନଙ୍କର ସାବଧାନ ହେବା ଉଚିତ । ନେତାଜୀ ଏହି ଅପପ୍ରବୃତ୍ତିର ବିରୁଦ୍ଧରେ ଆପତ୍ତି ଦର୍ଶାଇଥିଲେ ।

ସୁଭାଷ ଭାରତୀୟ 'ମଜଲିସ୍'ରେ ଖୁବ୍ ପ୍ରିୟ ହୋଇଉଠିଥିଲେ । ୧୯୧୮ ମସିହାରେ ବିଲାତରେ ଥିବାବେଳେ ଭାରତ ସଂପର୍କୀୟ ମନ୍ତ୍ରୀ ଲର୍ଡ ଲିଟନ୍‌ଙ୍କର ଅଧ୍ୟକ୍ଷତାରେ ଏକ କମିଟି ନିଯୁକ୍ତ କଲେ । ଗ୍ରେଟ୍‌ବ୍ରିଟେନ୍‌ରେ ଥିବା ଭାରତୀୟ ଛାତ୍ରଙ୍କର ବିଭିନ୍ନ ଅଭିଯୋଗର ବିଚାରପାଇଁ କମିଟି ନିଯୁକ୍ତ ହୋଇଥିଲା । ଭାରତୀୟ 'ମଜଲିସ୍' ତିନି ଜଣ ଛାତ୍ରଙ୍କୁ ଲିଟନ୍ କମିଟି ଆଗରେ ସାକ୍ଷ୍ୟ ଦେବାପାଇଁ ମନୋନୀତ କଲେ । ସେମାନେ ହେଲେ—ପୁନାର କେ. ଏମ୍. ଖାଡ଼ିଏ, ସୁଭାଷ ଚନ୍ଦ୍ର ବୋଷ ଓ ମୁଁ । ଆମେ ଲିଟନ୍ କମିଟିକୁ ଭେଟି ଆମର ମତାମତ ଉପସ୍ଥାପିତ କଲୁ ।

ଟ୍ରେନିଂ ଶେଷ ହେବା ପୂର୍ବରୁ ସୁଭାଷ ଚନ୍ଦ୍ର ଭାରତୀୟ ସିଭିଲ୍ ସର୍ଭିସ୍‌ରୁ ଇସ୍ତଫା ଦେଇଦେଲେ । ଇସ୍ତଫା ଦେବାଦିନ ସନ୍ଧ୍ୟାବେଳେ ସେ ମୋ ପାଖକୁ ଆସି ଏହି ଖବରଟି ଦେଲେ । ମୁଁ ଏଥିରେ ଆଶ୍ଚର୍ଯ୍ୟ ନ ହେଲେ ମଧ୍ୟ ତାଙ୍କର ପିତା ରାୟବାହାଦୂର ଜାନକୀନାଥ ବୋଷଙ୍କୁ ପରାମର୍ଶ କରି ସେ ଏହା କରିଛନ୍ତି କି ବୋଲି ପଚାରିଲି । ସେ କହିଲେ, ସେ ତାଙ୍କର ପିତାଙ୍କୁ ଖବର ଦେଇଛନ୍ତି । ଟ୍ରାଇପସ୍ ଶେଷ କରିବାପରେ ୧୯୧୯ ମସିହାରେ ସେ କେମ୍ବ୍ରିଜ ଛାଡ଼ିଲେ ।

୧୯୨୧ ମସିହାରେ ମୁଁ ଭାରତକୁ ଫେରିଆସିବା ପରେ ଆମ ଉଭୟଙ୍କ ମଧ୍ୟରେ ଚିଠିପତ୍ରର ଆଦାନ ପ୍ରଦାନ ହେଉଥିଲା । ଯେତେବେଳେ ସେ ଫରୱାର୍ଡ ବ୍ଲକ୍ ପ୍ରତିଷ୍ଠା କଲେ, ସେ ଥରେ କଟକ ଆସିଥିଲେ । ବିଖ୍ୟାତ ଓକିଲ ଶରତ୍ ଚନ୍ଦ୍ର ମୁଖାର୍ଜୀଙ୍କର ପୁଅ ସୁଧାଂଶୁ ମୁଖାର୍ଜୀଙ୍କର ସେ ଅତିଥି ହୋଇଥିଲେ । ସେ ଯେତେବେଳେ ହାତୀ ପିଠିରେ ବସି ଏକ ପଟୁଆରରେ ସୁଧାଂଶୁବାବୁଙ୍କ ଘରେ ପହଞ୍ଚିଲେ, ମୁଁ ତାଙ୍କୁ ସାକ୍ଷାତ୍ କରିବାକୁ ଯାଇଥିଲି । ମୁଁ ରାତିରେ ଆମ ଘରେ ଖାଇବାପାଇଁ ତାଙ୍କୁ

ନିମନ୍ତ୍ରଣ କଲି ଓ ସେ ମୋର ନିମନ୍ତ୍ରଣ ଗ୍ରହଣ କଲେ । ମୁଁ ମନ୍ତ୍ରୀମାନଙ୍କୁ ମଧ୍ୟ ନିମନ୍ତ୍ରଣ କରିଥିଲି । କିନ୍ତୁ କେବଳ ଶ୍ରୀ ବୋଧରାମ ଦୁବେ ଆସିଲେ । ସେତେବେଳେ ସୁଭାଷ-ଚନ୍ଦ୍ରଙ୍କ ଉପରେ କଂଗ୍ରେସର ସୁଦୃଷ୍ଟି ନଥିଲା । ଜଣେ ସରକାରୀ ଚାକିରିଆ ନେତାଜୀ ସୁଭାଷଚନ୍ଦ୍ରଙ୍କୁ ନିମନ୍ତ୍ରଣ କରିବା ବିଷୟରେ ଗୃରଆଡେ କଥାବାର୍ତ୍ତା ହେଲା । କିନ୍ତୁ ସେଥିପାଇଁ ମୋତେ କୈଫିୟତ୍ ଦେବାକୁ ପଡ଼ିନାହିଁ, ଯେପରିକି କେତେକ ବର୍ଷ ପରେ ରେଭେନ୍ସା କଲେଜର ପୁରାତନ ଛାତ୍ରସଂଘକୁ ରାଜାଜୀଙ୍କୁ ନିମନ୍ତ୍ରଣ କରି ମୋତେ କୈଫିୟତ ଦେବାକୁ ପଡ଼ିଥିଲା ।

ନେତାଜୀଙ୍କ ସହିତ ସାକ୍ଷାତ୍ କରିବା ମୋ ପାଇଁ ଥିଲା ଏହା ଶେଷଥର ।

ଏମାନୁଏଲ୍ କଲେଜରେ ଅନ୍ୟ ଜଣେ ଭାରତୀୟ ଛାତ୍ର ଥିଲେ ଶ୍ରୀ କେ. ସି. ମହେନ୍ଦ୍ର, ଯାହାଙ୍କ ସହିତ ମୋର ଘନିଷ୍ଠତା ଜମିଥିଲା । ତାଙ୍କ ଘର ପଞ୍ଜାବରେ । ଅର୍ଥନୀତିରେ ସେ ଟ୍ରାଇପସ୍ ନେଇଥିଲେ ଓ ଭାରତକୁ ଫେରିବା ପରେ କଲିକତାରେ ଏକ ବ୍ୟବସାୟ ପ୍ରତିଷ୍ଠାନ ମାର୍ଟିନ୍ କମ୍ପାନୀରେ ସେ ଯୋଗ ଦେଇଥିଲେ । ସେଠାରେ ତାଙ୍କର ଭାଇ ଜଣେ ଅଫିସର ଥିଲେ । ପରେ ସେ ଓ ତାଙ୍କ ଭାଇ, 'ମହେନ୍ଦ୍ର ଏଣ୍ଡ ମହେନ୍ଦ୍ର' ନାମରେ ଏକ ସ୍ୱାଧୀନ ବ୍ୟବସାୟ ପ୍ରତିଷ୍ଠାନ କଲେ । ଭାରତକୁ ଫେରିବା ପରେ କଲିକତା ଓ ଦିଲ୍ଲୀରେ ତାଙ୍କ ସହିତ ମୋର ବହୁବାର ଦେଖା ହୋଇଛି । ଅଳ୍ପ କେତେ ବର୍ଷ ତଳେ ତାଙ୍କର ମୃତ୍ୟୁ ହେଲା । ତାଙ୍କ ପରି ଜଣେ ଅମାୟିକ ବ୍ୟକ୍ତିଙ୍କୁ ଭୁଲିବା ସହଜ ନୁହେଁ ।

ପରିଶେଷରେ ଶ୍ରୀ ଓ୍ୱାଇ. ଜେ. ତାରାପୋରେବାଲାଙ୍କ ନାମ ମୁଁ ଉଲ୍ଲେଖ କରିବି । ତାଙ୍କ କଥା ଶେଷରେ କହୁଅଛି ବୋଲି ଯେ ସେ ମୋର କମ୍ ଘନିଷ୍ଠ ବନ୍ଧୁ ତାହା ନୁହେଁ । ସେ ବମ୍ବେର ଜଣେ ପାର୍ଶୀ ଛାତ୍ର ଥିଲେ ଓ ଇତିହାସରେ ଟ୍ରାଇପସ୍ ନେଇଥିଲେ । ଆମେ ପରସ୍ପର ଘନିଷ୍ଠ ବନ୍ଧୁ ହୋଇଗଲୁ ଓ ପ୍ରାୟ ପ୍ରତିଦିନ ଏକାଠି ବୁଲିବାକୁ ଯାଉଥିଲୁ । ଭାରତକୁ ଫେରିବା ପରେ ସେ କଲିକତା ବିଶ୍ୱବିଦ୍ୟାଳୟରେ ଇତିହାସ ଅଧ୍ୟାପକ ହୋଇଥିଲେ । ତା'ପରେ ପାଟନା କଲେଜରେ ଇତିହାସ ଅଧ୍ୟାପକ-ରୂପେ ଯୋଗଦେଲେ । ତାଙ୍କର ଭାଇ ଡକ୍ଟର୍ ତାରାପୋରେବାଲା ଜଣେ ଭାଷାତତ୍ତ୍ୱବିତ୍ ଥିଲେ ଓ କଲିକତା ବିଶ୍ୱବିଦ୍ୟାଳୟରେ ଭାଷାତତ୍ତ୍ୱର ଅଧ୍ୟାପକ ଥିଲେ । ମୁଁ ବିଲାତରୁ ଫେରିବା ପରେ ଓ୍ୱାଇ. ଜେ. ତାରାପୋରେବାଲାଙ୍କ ସହିତ ବହୁବାର ଦେଖା ହୋଇଛି । ସେ ତାଙ୍କର ଭାଇ ଓ ମା'ଙ୍କ ସହିତ ରହୁଥିଲେ । ମୁଁ ତାଙ୍କ ପରିବାର

ମଧ୍ୟରେ ବେଶ୍ ପରିଚିତ ଥିଲି । ମୋର ବିଭାଘର ବେଳେ ମୁଁ ତାଙ୍କୁ ନିମନ୍ତ୍ରଣ କରିଥିଲି। ସେ କଲିକତାରୁ ଆସିଥିଲେ । ପିଲାଦିନରୁ ଏକ ବଡ଼ ସହରରେ ବଢ଼ିଥିଲେ ମଧ୍ୟ ଗୋଟିଏ ଗାଆଁକୁ ଯିବାରେ ଓ ତଳେ ଚଟାଣରେ ବସି ଖାଇବାରେ ସେ କୌଣସି କୁଣ୍ଠାବୋଧ କରି ନଥିଲେ । ଆମେ ପରସ୍ପର ସହିତ ବରାବର ସମ୍ପର୍କ ରକ୍ଷା କରିଥିଲୁ । ତାଙ୍କର ବିବାହ ପରେ ମୁଁ ଅନେକ ସମୟରେ ପାଟନା ଯାଇ ତାଙ୍କ ଘରେ ରହୁଥିଲି । ଏବେ ମଧ୍ୟ ଆମ ମଧ୍ୟରେ ଚିଠିପତ୍ରର ଆଦାନପ୍ରଦାନ ଅଛି । ତାଙ୍କର ଅମାୟିକତା, କର୍ତ୍ତବ୍ୟଜ୍ଞାନ ଓ ସାଧୁତା ଅଧ୍ୟାପନା ସଂସ୍ଥିତରେ ଆଦର୍ଶ ହେବା ବାଞ୍ଛନୀୟ ।

## ଅନ୍ୟାନ୍ୟ ବନ୍ଧୁ

ଏବେ କେମ୍ବ୍ରିଜଠାରେ ଥିବା ମୋର ଅନ୍ୟ ବନ୍ଧୁମାନଙ୍କ ସମ୍ପର୍କରେ ଉଲ୍ଲେଖ କରୁଛି । ସେମାନେ କେଉଁ କେଉଁ କଲେଜରେ ପଢ଼ୁଥିଲେ ତାହା ମନେ ପକାଇବା ବର୍ତ୍ତମାନ କଷ୍ଟକର । ତେଣୁ ବନ୍ଧୁମାନଙ୍କ ବିଷୟ କଲେଜଦ୍ୱାରା ଆଲୋଚନା ନ କରି ମୁଁ ବ୍ୟକ୍ତିଗତ ଭାବରେ ସେମାନଙ୍କ ସମ୍ପର୍କରେ ମୋର ଅଭିଜ୍ଞତା ଉଲ୍ଲେଖ କରିବି । ପ୍ରଥମତଃ ଆମ ପୁରୁଣା ପ୍ରଦେଶ ବିହାର-ଓଡ଼ିଶାର ଛାତ୍ରମାନଙ୍କ ସମ୍ପର୍କରେ କହିବାକୁଛି । ମୁଁ ପୂର୍ବରୁ ଉଲ୍ଲେଖ କରିଛି ଯେ, ବିହାର-ଓଡ଼ିଶାର ପ୍ରଥମ ବୃତ୍ତିଧାରୀ ଛାତ୍ରମାନେ ହେଲେ, ସର୍ବଶ୍ରୀ ଏ. ଏସ୍. ଖାଁ, ଏସ୍. ଆର୍. ୟୁ. ଜମାନ୍ ଓ ମୁଁ । ପରବର୍ତ୍ତୀ ବୃତ୍ତିଧାରୀମାନେ ହେଲେ, ଶ୍ରୀ କାମତାପ୍ରସାଦ, ଶ୍ରୀ ଏସ୍. ପି. ତ୍ରିପାଠୀ ଏବଂ ଶ୍ରୀ ଏ. ସି. ବାନାର୍ଜୀ । ଶ୍ରୀ ତ୍ରିପାଠୀଙ୍କ କଥା ମୁଁ ପୂର୍ବରୁ ଆଲୋଚନା କରିଛି ଏବଂ ପରେ ମଧ୍ୟ ତାଙ୍କ କଥା ପଡ଼ିବ । ଶ୍ରୀ କାମତାପ୍ରସାଦଙ୍କର ଶିକ୍ଷାଗତ ରେକର୍ଡ ଖୁବ୍ ଭଲ ଥିଲା । କଲିକତା ବିଶ୍ୱବିଦ୍ୟାଳୟର ସୁପାରିଶ କ୍ରମେ ସେ ଜଣେ ଡେପୁଟି କଲେକ୍ଟର ଭାବରେ ନିଯୁକ୍ତ ହୋଇଥିଲେ । ବିହାର-ଓଡ଼ିଶା ସରକାର ତାଙ୍କୁ ବିଲାତ ଯିବାପାଇଁ ବୃତ୍ତି ଦେବା ସ୍ଥିର କଲେ । ସେ ଚାକିରିରୁ ଇସ୍ତଫା ଦେଇ କେମ୍ବ୍ରିଜ ଗଲେ । ସେଠାରେ ପଦାର୍ଥ ବିଜ୍ଞାନରେ ଟ୍ରାଇପସ୍ ନେଲେ ଓ ଦ୍ୱିତୀୟ ଭାଗରେ ପ୍ରଥମଶ୍ରେଣୀ ପାଇଲେ । ବିଲାତରେ ଏକ ସରକାରୀ ଅନୁଷ୍ଠାନରେ ସେ ଜଣେ ରିସର୍ଚ୍ଚ ଅଫିସର୍‌ରୂପେ କେତେ ଦିନ ନିଯୁକ୍ତି ପାଇଥିଲେ । ତା'ପରେ ପାଟନା କଲେଜର ପଦାର୍ଥବିଜ୍ଞାନ ଅଧ୍ୟାପକରୂପେ ଭାରତୀୟ ଏଡୁକେସନ୍ ସର୍ଭିସ୍‌ରେ ଯୋଗ ଦେଲେ । ଶେଷରେ ପାଟନା କଲେଜର ପ୍ରିନ୍ସିପାଲ ଓ ବିହାର ପବ୍ଲିକ୍ ସର୍ଭିସ୍ କମିଶନ୍‌ର ସେ ଚେୟାରମ୍ୟାନ ହୋଇଥିଲେ । ଶ୍ରୀ ଆଫଜଲ୍ ହୁସେନ୍‌ଙ୍କ ପରେ ଶ୍ରୀ ପ୍ରସାଦ ମଧ୍ୟ ଜଣେ ପ୍ରୌଢ଼ ଛାତ୍ର ଥିଲେ ।

ଅନ୍ୟ ବୃତ୍ତିଧାରୀ ଛାତ୍ର ଶ୍ରୀ ଅମିୟ ଚନ୍ଦ୍ର ବାନାର୍ଜୀ ଗଣିତରେ ଟ୍ରାଇପସ୍ ନେଇ ର୍‍ୟାଙ୍ଗ୍‌ଲର୍ (Wrangler) ହୋଇଥିଲେ । ଯେଉଁମାନେ ଟ୍ରାଇପସ୍ ଦ୍ୱିତୀୟ ପରୀକ୍ଷାରେ ଗଣିତରେ ପ୍ରଥମଶ୍ରେଣୀ ପାଆନ୍ତି ସେମାନଙ୍କୁ ର୍‍ୟାଙ୍ଗ୍‌ଲର୍ କହନ୍ତି । ଏ ପଦବୀଟି ପୁରାତନ କାଳରୁ ଚାଲି ଆସୁଅଛି । କିନ୍ତୁ ଯେଉଁ ପ୍ରଥାଯୋଗୁଁ ନାମକରଣ ହୋଇଥିଲା, ସେ ପ୍ରଥା ଆଜି ଆଉ ନାହିଁ । ପୁରାକାଳରେ ପରୀକ୍ଷାର୍ଥୀମାନେ ପରୀକ୍ଷକଙ୍କ ସଙ୍ଗେ ଗୋଟିଏ ସମସ୍ୟା ଉପରେ "ର୍‍ୟାଙ୍ଗ୍‌ଲ୍" ବା ତର୍କବିତର୍କ କରି ବିଶେଷ କୃତିତ୍ୱ ଲାଭକଲେ "ର୍‍ୟାଙ୍ଗ୍‌ଲର୍" ପଦ ପାଉଥିଲେ । ପରୀକ୍ଷକ ତିନିଗୋଡ଼ିଆ ଟୁଲ୍ (ଟ୍ରାଇପସ୍) ଉପରେ ବସୁଥିଲେ ବୋଲି ପରୀକ୍ଷାର ନାମ 'ଟ୍ରାଇପସ୍' ହୋଇଅଛି । ୧୯୦୬ ମସିହା ପର୍ଯ୍ୟନ୍ତ ର୍‍ୟାଙ୍ଗ୍‌ଲର୍‌ମାନଙ୍କ ନାମ ଯୋଗ୍ୟତା ଅନୁସାରେ ରଖାଯାଉଥିଲା । ଯେ ପ୍ରଥମ ହେଉଥିଲେ ତାଙ୍କୁ କୁହାଯାଉଥିଲା "ସିନିଅର୍ ର୍‍ୟାଙ୍ଗ୍‌ଲର୍ ।" ୧୯୦୬ ମସିହା ପରେ ନାମ ସବୁ ବର୍ଣ୍ଣମାଳା କ୍ରମରେ ପ୍ରକାଶ ପାଇଲା । କିନ୍ତୁ ର୍‍ୟାଙ୍ଗ୍‌ଲର୍ ନାମଟି ସେହିପରି ରହିଲା । ଯେଉଁମାନେ ଦ୍ୱିତୀୟ ବିଭାଗରେ ଦ୍ୱିତୀୟଶ୍ରେଣୀ ପାଉଥିଲେ, ସେମାନଙ୍କୁ କୁହାଯାଉଥିଲା, "ସିନିଅର୍ ଅପ୍‌ଟାଇମସ୍" ଏବଂ ଯେଉଁମାନେ ତୃତୀୟ ଶ୍ରେଣୀ ପାଉଥିଲେ ସେମାନଙ୍କୁ କୁହାଯାଉଥିଲା "ଜୁନିଅର୍ ଅପ୍‌ଟାଇମ୍‌ସ" । ଏସବୁ ଲାଟିନ୍ ଶବ୍ଦ, ଯାହାର ଅର୍ଥ ହେଉଛି ଦ୍ୱିତୀୟ ଉତ୍କୃଷ୍ଟତମ ଓ ତୃତୀୟ ଉତ୍କୃଷ୍ଟତମ ।

ଶ୍ରୀ ବାନାର୍ଜୀ ଜଣେ ର୍‍ୟାଙ୍ଗ୍‌ଲର୍ ହୋଇଥିଲେ । ସେ ଭାରତୀୟ ଛାତ୍ରମାନଙ୍କ ମଧ୍ୟରେ ଅତି ପ୍ରିୟ ଥିଲେ । ସିନିଅର୍ ଛାତ୍ରମାନଙ୍କ ପ୍ରତି ତାଙ୍କର ବ୍ୟବହାର ଯୋଗୁଁ ଛାତ୍ରମାନେ ତାଙ୍କୁ ଫାଦର ବାନାର୍ଜୀ ବୋଲି ଡାକୁଥିଲେ । ବିହାର-ଓଡ଼ିଶାର ବୃତ୍ତିଧାରୀ ଛାତ୍ର ଭାବରେ ବିହାର-ଓଡ଼ିଶାରେ ଚାକିରି କରିବାପାଇଁ ସେ ଚୁକ୍ତିବଦ୍ଧ ହୋଇଥିଲେ । କିନ୍ତୁ ସେ ଫେରିବାବେଳକୁ ବିହାର-ଓଡ଼ିଶାରେ ତାଙ୍କ ଉପଯୋଗୀ ଚାକିରି ନଥିଲା । ଉତ୍ତରପ୍ରଦେଶରେ ଭାରତୀୟ ଏଡୁକେସନ୍ ସର୍ଭିସ୍‌ରେ ସ୍ଥାନ ଖାଲି ଥିଲା । ସେଠାରୁ ଡକରା ଆସିବାରୁ ସେ ଅନୁମତି ନେଇ ଏଲାହାବାଦ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକରୂପେ ଯୋଗଦେଲେ । ୧୯୬୯ ମସିହାପାଇଁ ସେ ଭାରତୀୟ ବିଜ୍ଞାନ କଂଗ୍ରେସର ସଭାପତି-ରୂପେ ନିର୍ବାଚିତ ହୋଇଥିଲେ । କିନ୍ତୁ ଦାୟିତ୍ୱ ଗ୍ରହଣ ପୂର୍ବରୁ ତାଙ୍କର ପରଲୋକ ହୋଇଗଲା । ଏଠାରେ ମୁଁ ଉଲ୍ଲେଖ କରିପାରେ ଯେ ଉତ୍ତରପ୍ରଦେଶକୁ ଯିବା ପାଇଁ ମୋତେ ମଧ୍ୟ ଡାକରା ଆସିଥିଲା । କିନ୍ତୁ ଆମ ସରକାର ମୋତେ ଛାଡ଼ିଲେ ନାହିଁ । ବିହାର-ଓଡ଼ିଶାର ମୋ ସମସ୍ତରର ଅନ୍ୟ ତିନି ଜଣ ଛାତ୍ର ହେଲେ—ଶ୍ରୀ ଶିବପାର୍ବତୀ ପ୍ରସାଦ, ଶ୍ରୀ ଏସ୍. ଏନ୍. ମଜୁମଦାର୍ (ବିହାର) ଓ ଶ୍ରୀ ନୀଳମଣି ସେନାପତି (ଓଡ଼ିଶା) ।

ଶିବପାର୍ବତୀ ପ୍ରସାଦ, ('ଏସ୍. ପି.' ନାମରେ ସେ ପରିଚିତ ଥିଲେ ।) ମୁଁ ଯେଉଁ ସମୟରେ କେମ୍ବ୍ରିଜ ଯାଇଥିଲି ପ୍ରାୟ ସେହି ସମୟରେ, ବିହାରର ଏକ ସାଧାରଣ ଟ୍ରଷ୍ଟ ପକ୍ଷରୁ ବୃତ୍ତି ଲାଭକରି ସେ ଯାଇଥିଲେ । ସେଠାରେ ସେ ପଦାର୍ଥବିଜ୍ଞାନ ଅଧ୍ୟୟନ କଲେ । ତାଙ୍କର ଅମାୟିକ ସ୍ୱଭାବ ଓ ରହସ୍ୟମୟ କଥାଭିମାଯୋଗୁଁ ସେ ଭାରତୀୟ ଛାତ୍ରମାନଙ୍କ ମଧ୍ୟରେ ଖୁବ୍ ପ୍ରିୟ ହୋଇପାରିଥିଲେ । କେମ୍ବ୍ରିଜରେ ଥିବାବେଳେ ଏକ ଶୋଚନୀୟ ଦୁର୍ଘଟଣାରେ ସେ ତାଙ୍କର ଗୋଟିଏ ଚକ୍ଷୁ ହରାଇ ଥିଲେ । ଉତ୍ତରପ୍ରଦେଶର ମୋର ଜଣେ ବନ୍ଧୁ ଶ୍ରୀ ଜଗତବଲ୍ଲଭ ସେଠ ସେଠାରେ ବିଜ୍ଞାନ ଅଧ୍ୟୟନ କରୁଥିଲେ । ସେଠ ଦିନେ ଦେଖିଲେ ଯେ, ତାପମାନ ଯନ୍ତ୍ରର ପାରଦ ସୂତ୍ରଟି ଦୁଇଭାଗ ହୋଇ-ଯାଇଛି । ସେ ଯନ୍ତ୍ରର ବଲ୍‌ବ୍‌କୁ ତତାଇ ପାରଦ ସୂତ୍ରର ଦୁଇଭାଗକୁ ଏକାଠି କରିବାର ଚେଷ୍ଟା କରୁଥିଲେ । ସେଠଙ୍କ ପାଖରେ ଠିଆହୋଇ ଏସ୍. ପି. ଏହା ଦେଖୁ-ଥିଲେ । ବୋଧହୁଏ ବଲ୍‌ବ୍‌ଟି ଅତ୍ୟଧିକ ଉତପ୍ତ ହୋଇଯିବାରୁ ଫାଟିଗଲା ଓ ସେଥିରୁ ଖଣ୍ଡେ କାଚର ଛୁଟିକା ଆସି ତାଙ୍କ ଆଖିର ଡୋଳାକୁ ଆଘାତ କଲା । ଯାହା ଫଳରେ କି ତାଙ୍କ ଆଖି ଡୋଳାଟିକୁ ବାହାର କରାଯାଇ ତା' ସ୍ଥାନରେ ଏକ କାଚର ନକଲି ଡୋଳା ଲଗାଇବାକୁ ପଡିଥିଲା । ଏହା ଅତ୍ୟଧିକ ଦୁଃଖଦାୟକ । ମୋର ଏହା ଲେଖିବାର ଉଦ୍ଦେଶ୍ୟ ହେଉଛି ଶ୍ରୀ ପ୍ରସାଦ କିପରି ଅବିଚଳିତ ଭାବରେ ଧୈର୍ଯ୍ୟର ସହିତ ଦୁଃଖ ବହନ କରିଥିଲେ । ଏତଦ୍ୱାରା ତାଙ୍କର ପ୍ରଶଂସନୀୟ ଅବି-ଚଳିତ ମନୋଭାବ ପ୍ରମାଣିତ ହୋଇଥିଲା । ସେ ଆଗ୍ରା କଲେଜରେ ପଦାର୍ଥବିଜ୍ଞାନ ଅଧ୍ୟାପକ ଭାବରେ ଯୋଗଦେଇଥିଲେ ଓ କେତେକ ବର୍ଷ ପରେ ପାଟନା କଲେଜକୁ ପଦାର୍ଥବିଦ୍ୟା ବିଭାଗର ଅଧ୍ୟାପକ ଭାବରେ ଆସିଥିଲେ । ଆମେ ପରସ୍ପର ଘନିଷ୍ଠ ବନ୍ଧୁ ଥିଲୁ । ଏଠାକୁ ଫେରିଆସି ଆମର ସେ ବନ୍ଧୁତା ଏଯାବତ୍ ଅକ୍ଷୁର୍ଣ୍ଣ ରହିଛି, ଯଦିଓ ଅବସର ଗ୍ରହଣ ପରେ ଉଭୟଙ୍କ ମଧ୍ୟରେ ସାକ୍ଷାତ୍‌ର ସୁଯୋଗ ଘଟି ନାହିଁ ।

୧୯୧୭ ମସିହାରେ ଶ୍ରୀ ନୀଳମଣି ସେନ ପତି (ସୁପରିଚିତ ସେନାପତି ସାହେବ) ଆସିଲେ ଏବଂ ଯୁନିଭର୍ସିଟି କଲେଜରେ ଯୋଗଦେଇ ଅର୍ଥଶାସ୍ତ୍ର ଅଧ୍ୟୟନ କଲେ । ବର୍ଷେ ଖଣ୍ଡେ ଭିତରେ ଭାରତୀୟ ସିଭିଲ୍ ସର୍ଭିସ୍ ପାଇଁ ତାଙ୍କୁ ବଛାଗଲା । ଏହି ସର୍ଭିସ୍‌ରେ ଭାରତୀୟମାନଙ୍କ ସଂଖ୍ୟା ବଢାଇବା ନିମନ୍ତେ ମଣ୍ଟେଗୁ ଯୋଜନା ଅନୁଯାୟୀ ତାଙ୍କୁ ନିଆ ଯାଇଥିଲା । ବିହାର ଓ ଓଡ଼ିଶାର ଅନ୍ୟ ଯେଉଁ ଦୁଇ ଜଣ ଯାଇଥିଲେ ସେମାନେ ହେଲେ ଶ୍ରୀ ଏମ୍. ଆର୍. ୟୁ. ଜମାନ୍, ଯେ କି ବିହାର ଓ ଓଡ଼ିଶାର ବୃତ୍ତିମାନ ଛାତ୍ର ଭାବରେ ମୋ

ସହିତ କେମ୍ବ୍ରିଜ ଆସିଥିଲେ ଏବଂ ଶ୍ରୀ ସୁଧେନ୍ଦ୍ର ନାଥ ମଜୁମ୍‌ଦାର୍ । ଶ୍ରୀ ମଜୁମ୍‌ଦାର୍ ତାଙ୍କର ତାଲିମ କାଳ ମଧ୍ୟରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଯୋଗ ଦେଇଥିଲେ । ଏମାନେ ସମସ୍ତେ ନିଜ ନିଜର ଚାକିରି କାର୍ଯ୍ୟକାଳ ମଧ୍ୟରେ ଉଚ୍ଚ ସମ୍ମାନର ଅଧିକାରୀ ହୋଇଥିଲେ । ଜମାନ୍ ଅଳ୍ପ ବୟସରେ ମରିଗଲେ । ଚାକିରି କାର୍ଯ୍ୟକାଳରେ ଯଥେଷ୍ଟ ଖ୍ୟାତି ଅର୍ଜନ କରି ସେନାପତି ସାହେବ ରେଭିନ୍ୟୁ ବୋର୍ଡ଼ ଚେୟାରମ୍ୟାନ ଥାଇ ଅବସର ଗ୍ରହଣ କଲେ । ଅବସର ସମୟରେ ମଧ୍ୟ ସେ ବହୁ ସାଧାରଣ ପ୍ରତିଷ୍ଠାନ ସହିତ ସକ୍ରିୟ ସଂପୃକ୍ତ ଅଛନ୍ତି ।

ମଜୁମ୍‌ଦାର୍ ସାହେବ ରାଉରକେଲା ଇସ୍ପାତ୍ କାରଖାନାର ଜେନେରାଲ ମ୍ୟାନେଜର ହୋଇ ଅବସର ଗ୍ରହଣ କରିଛନ୍ତି ଏବଂ ସେ ଦିଲ୍ଲୀରେ ଅବସ୍ଥାନ କରୁଛନ୍ତି । ତାଙ୍କର ଚାକିରି କାର୍ଯ୍ୟକାଳର ପ୍ରଥମ ଅବସ୍ଥାରେ ସେ ଖୋର୍ଦ୍ଧାର ଏସ୍. ଡି. ଓ ଥିଲେ ଓ ଆମ ମଧ୍ୟରେ ବହୁ ସମୟରେ ଦେଖା ସାକ୍ଷାତ୍ ହେଉଥିଲା । ତାଙ୍କ ବିଷୟରେ ମୋର ଗୋଟିଏ କଥା ମନେପଡୁଛି । ସେ ଖୋର୍ଦ୍ଧାର ସବ୍‌ଡିଭିଜନାଲ୍ ଅଫିସର୍ ଥିଲାବେଳେ କୌଣସି ଗୋଟିଏ ସ୍କୁଲର (ମୋର ମନେ ହେଉଛି ଗୋଟିଏ ମଧ୍ୟଇଂରାଜୀ ସ୍କୁଲ) ପୁରସ୍କାର ବିତରଣୀ ସଭାରେ ସଭାପତିତ୍ୱ କରୁଥିଲେ । ସେ ବଡ଼ ହେଲେ କ'ଣ ହେବ, ଏ ବିଷୟରେ ଜଣେ ଛାତ୍ର ଗୋଟିଏ କବିତା ଆବୃତ୍ତି କରୁଥିଲା । ସେ ଆବୃତ୍ତି କଲା ଯେ, ସେ ବଡ଼ହେଲେ ଜଣେ ପୋଲିସ କର୍ମଚାରୀ ହେବ । ମଜୁମ୍‌ଦାର୍ ସାହେବ ତାଙ୍କର ଶେଷ ଭାଷଣରେ କହିଲେ, ପିଲାମାନେ ପୋଲିସ ହେବା ଅପେକ୍ଷା ଅନ୍ୟ ଉଚ୍ଚତର ଆଦର୍ଶରେ ଅନୁପ୍ରାଣିତ ହେବାପାଇଁ ଶିକ୍ଷା ପାଇବା ଆବଶ୍ୟକ । ତାଙ୍କର ଏ ମନ୍ତବ୍ୟ ଚାରିଆଡେ ଆଲୋଚିତ ହେଲା । କର୍ତ୍ତୃପକ୍ଷ ଏ ବିଷୟରେ କ'ଣ କଲେ ମୁଁ ଜାଣେ ନାହିଁ । କିନ୍ତୁ ଗୋଟିଏ କଥା ମୁଁ ଜାଣେ ଯେ, କମିଶନର୍ ଚାରିଆଡ଼କୁ ସାଇକଲରେ ନ ଯାଇ ଗୋଟିଏ ଘୋଡ଼ା ରଖିବାପାଇଁ ତାଙ୍କୁ ପରାମର୍ଶ ଦେଲେ । କାରଣ ସେ ତାଙ୍କ ଆସନର ମର୍ଯ୍ୟାଦା ବଜାୟ ରଖିବା ଉଚିତ । ଖୋର୍ଦ୍ଧାରେ ଥିବାବେଳେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସହିତ ତାଙ୍କର ମତଭେଦ ହୋଇଥିଲା । ମୁଁ ଏ କଥାଟି ଜାଣେ, କାହିଁକି ନା, ଥରେ ପଣ୍ଡିତ ଗୋଦାବରୀଶ ମିଶ୍ର ମୋର ଅତିଥି ହୋଇଥିବାବେଳେ ମଜୁମ୍‌ଦାର୍ ସାହେବ ଓ ତାଙ୍କର ସ୍ତ୍ରୀ ଆସି ପହଞ୍ଚିଗଲେ । ପଣ୍ଡିତ ଗୋଦାବରୀଶ ମିଶ୍ର ମୋ ସହିତ ରହୁଥିବାରୁ ଶୁଣିପାରି ସେମାନେ ଟିକିଏ ଅସ୍ୱସ୍ତି ଅନୁଭବ କରିବାର ମୁଁ ଦେଖିଲି । ସେତେବେଳେ ରାଜନୀତିଜ୍ଞ ଓ ଶାସନ ବିଭାଗର କର୍ମଚାରୀଙ୍କ ମଧ୍ୟରେ ମତଭେଦ ଆଦୌ ଅସ୍ୱାଭାବିକ ନ ଥିଲା ।

ଡଃ ମିସ୍ ଘୋଷ ଲଣ୍ଡନରେ ଡାକ୍ତରି ପଢ଼ି ଏମ୍. ଆର୍. ସି ପି. ହେବା ପରେ ମଜୁମ୍‌ଦାର୍ ସାହେବ ତାଙ୍କୁ ବିବାହ କରିଥିଲେ । ଭାରତକୁ ଫେରିଆସିବା ପରେ ସେମାନେ ବହୁ ବର୍ଷ ଏକାଠି ରହିଲେ । କିନ୍ତୁ ଶ୍ରୀମତୀ ମଜୁମ୍‌ଦାର୍ ଭାରତ ଭିତରେ ଡାକ୍ତରୀ କ୍ଷେତ୍ରରେ କେତେକ ନିଯୁକ୍ତି ପାଇ ତାହା ଗ୍ରହଣ କରିସିବାରୁ ସେମାନଙ୍କୁ ଅଲଗା ଅଲଗା ରହିବାକୁ ପଡ଼ିଲା ।

ଆନ୍ଧ୍ର ପ୍ରଦେଶରୁ ଆସିଥିବା ଭାରତୀୟ ଛାତ୍ର ସି. ଭି. ହନୁମନ୍ତରାଓଙ୍କୁ ମୁଁ ଭଲ ଭାବରେ ଜାଣିଥିଲି । ସେ ମୋର ସିନିଅର୍ ଥିଲେ ଓ ଜଣେ ସ୍କଲାର୍ ଥିଲେ । ସେ ଟ୍ରିନିଟି କଲେଜରେ ପଢ଼ୁଥିଲେ । ଇଂଲଣ୍ଡର ଦକ୍ଷିଣାଞ୍ଚଳର ବୋର୍ଣ୍ଣମାଉଥ୍‌ଠାରେ ଆମେ ଦୁହେଁ ଏକତ୍ର ଗୋଟିଏ ଛୁଟି କଟାଇଥିଲୁ । ସେ ଖୁବ୍ ଧୀର ସ୍ଥିର ସ୍ୱଭାବର ବ୍ୟକ୍ତି ଥିଲେ । କିନ୍ତୁ ତାଙ୍କର କଳ୍ପନା ଶକ୍ତି ଅତି ପ୍ରବଳ ଥିଲା । ସେ କୌଣସି ବ୍ୟକ୍ତିଙ୍କ ବିଷୟରେ ସେ ଏପରି ଗୋଟିଏ କାହାଣୀ ଗଢ଼ିଦେବେ ଯେ ତାହା ସତ୍ୟ ପରି ମନେହେବ । ତାଙ୍କ ସମ୍ପର୍କରେ ମୁଁ ଗୋଟିଏ ଘଟଣା ଜାଣେ; ଯେଉଁଥିରୁ ତାଙ୍କର ସରସତାର ପ୍ରମାଣ ମିଳିବ । ଥରେ ଏକ ଗ୍ରୀଷ୍ମ ଋତୁରେ ଇଂଲଣ୍ଡର ବିଭିନ୍ନ ବିଶ୍ୱବିଦ୍ୟାଳୟର ଭାରତୀୟ ଛାତ୍ରମାନେ ଉତ୍ତର ଇଂଲଣ୍ଡର ଏକ ଗ୍ରେଟ ସହରରେ ଗୋଟିଏ ଗ୍ରୀଷ୍ମ ଶିବିର ସଂଗଠନ କରିଥିଲେ । ଶ୍ରୀମତୀ ମଜୁମ୍‌ଦାର୍ (ସେତେବେଳେ ସେ ମିସ୍ ଘୋଷ ନାମରେ ପରିଚିତା) ବିଭିନ୍ନ ବିଶ୍ୱବିଦ୍ୟାଳୟର ବହୁ ମହିଳାଙ୍କସହିତ ଏହି ଶିବିରରେ ଯୋଗ ଦେଇଥିଲେ । ମହିଳାମାନେ କୌଣସି ଏକ ସମାଜମଙ୍ଗଳ କାର୍ଯ୍ୟରେ ଚାନ୍ଦା ସଂଗ୍ରହ କରୁଥାନ୍ତି । ମିସ୍ ଘୋଷ ଓ ଅନ୍ୟ କେତେଜଣ ମୁଷ୍ଟି ଭିକ୍ଷା ଥାଳି ଧରି ସମସ୍ତଙ୍କ ପାଖକୁ ଯାଉଥାନ୍ତି । ସେମାନେ ହନୁମନ୍ତରାଓଙ୍କ ପାଖରେ ପହଞ୍ଚିବାରୁ ସେ କିଛି ଦେଇ ପାରିବେ ନାହିଁ ବୋଲି କହି ମନାକରିଦେଲେ । ମହିଳାମାନେ ବୁଲି ବୁଲି ପୁଣି ଥରେ ଶ୍ରୀ ହନୁମନ୍ତରାଓଙ୍କ ପାଖକୁ ଆସିଲେ । ସେମାନେ ତାଙ୍କ ପାଖକୁ ପୂର୍ବରୁ ଆସିଥିଲେ, ଏକଥା ସେମାନଙ୍କର ମନେ ନ ଥିଲା । ଶ୍ରୀ ରାଓ କହିଲେ ଥରେ ସେ ଦେଇପାରିବେ ନାହିଁ ବୋଲି ମନା କରିଦେଇଛନ୍ତି, ସେମାନେ ପୁଣି କାହିଁକି ଆସୁଛନ୍ତି । ମହିଳାମାନେ ତାଙ୍କର ନାମ କ'ଣ ବୋଲି ପଚାରିଲେ ଏବଂ କହିଲେ ତାଙ୍କର ନାମ ଲେଖି ରଖିଲେ ଆଉ ସେମାନେ ତାଙ୍କୁ ବ୍ୟସ୍ତ କରିବେ ନାହିଁ । ଶ୍ରୀ ହନୁମନ୍ତରାଓ ଟିକିଏ ବିରକ୍ତ ହୋଇପଡ଼ିଥିଲେ । ମହିଳାମାନଙ୍କୁ ଚିଡ଼ାଇବାପାଇଁ ସେ ଭାବିଲେ । ତେଣୁ ତାଙ୍କର ନାମକୁ ସେ ଏହିପରି ଭାବରେ ଉଚ୍ଚାରଣ କରି କହିଲେ— 'ହଜମାନ୍ୟ ହଜଣ୍ଡୀ

ଚନ୍ଦ୍ରଶେଖର ଭେଙ୍କଟ ହନୁମନ୍ତରାଓ ପାନ୍ତୁଲୁ ଗାରୁ' ଯେପରିକି ତେଲୁଗୁମାନଙ୍କର ନାମ ହୋଇଥାଏ । ଏଥିରେ ନାମ ଲେଖିବେ କ'ଣ ମହିଳାମାନେ ଶୀଘ୍ର ତାଙ୍କୁ ଛାଡ଼ି ଚାଲିଗଲେ । ଶ୍ରୀ ହନୁମନ୍ତରାଓ ଭାରତକୁ ଫେରି ଆସି ଲାହୋରଠାରେ ପଞ୍ଜାବ ବିଶ୍ୱବିଦ୍ୟାଳୟରେ ଅଙ୍କଶାସ୍ତ୍ର ଅଧ୍ୟାପକରୂପେ ଯୋଗଦେଲେ । ଭାରତୀୟ ବିଜ୍ଞାନ କଂଗ୍ରେସର ଲାହୋର ଅଧିବେଶନବେଳେ ତାଙ୍କ ସହିତ ମୋର ପୁଣିଥରେ ଦେଖା ହୋଇଥିଲା । ଜୀବନର ପରବର୍ତ୍ତୀ କାଳରେ ସେ ଗୁପ୍ତତତ୍ତ୍ୱବାଦ (ମିଷ୍ଟିସିଜମ୍) ପ୍ରତି ଆକୃଷ୍ଟ ହେଲେ । ତାଙ୍କୁ ତାଙ୍କର ଗୁରୁ ପରାମର୍ଶ ଦେଲେ ଯେ, ସେ ଯଦି କୋଣାର୍କ ଆସି ମାଘ ଶୁକ୍ଳ ସପ୍ତମୀଦିନ ସୂର୍ଯ୍ୟୋଦୟ ଦେଖନ୍ତି ତା' ହେଲେ ସେ ଯାହା ଦେଖିବେ ତଦ୍ୱାରା ତାଙ୍କର ଆଧ୍ୟାତ୍ମିକ ଉନ୍ନତିରେ ସାହାଯ୍ୟ ମିଳିବ । ତାଙ୍କ କୋଣାର୍କ ପରିଦର୍ଶନ-ପାଇଁ ମୁଁ କିଛି ବ୍ୟବସ୍ଥା କରିପାରିବି କି ବୋଲି ସେ ମୋ ପାଖକୁ ଲେଖିଲେ । ମୁଁ ତାଙ୍କର ସମସ୍ତ ବ୍ୟବସ୍ଥା କଲି । ସେ ଆସି ଆମ ଘରେ ରହିଲେ ଓ କୋଣାର୍କ ଗଲେ । ସେ ସମୟରେ କୋଣାର୍କ ଯାତ୍ରା ଆଦୌ ସହଜ ନ ଥିଲା । ସେ ଗୋଟିଏ ଜିପ୍‌ରେ ଯାଇ ମାଘସପ୍ତମୀ ଦିନ ସୂର୍ଯ୍ୟୋଦୟ ଦେଖି ଖୁବ୍ ଖୁସିହୋଇ ଫେରିଆସିଲେ । ସେ ମୋତେ କହିଲେ, ସେ ଯାହା ଦେଖିଲେ ତଦ୍ୱାରା ତାଙ୍କ ଗୁରୁଙ୍କର କହିବା କଥା ପ୍ରମାଣିତ ହେଲା । ସେ ମୋତେ ଆଉ କିଛି କହିଲେ ନାହିଁ । ତା'ର ଅଳ୍ପ କେତେବର୍ଷ ପରେ ତାଙ୍କର ମୃତ୍ୟୁହେଲା ।

ଆଉ ଜଣେ ଅଙ୍କଶାସ୍ତ୍ରର ଛାତ୍ର ଯାହାଙ୍କ ସହିତ ମୋର ଘନିଷ୍ଠତା ବଢ଼ିଥିଲା, ସେ କର୍ଣ୍ଣାଟକରୁ ଆସିଥିଲେ । ତାଙ୍କ ନାମ ଶ୍ରୀ ପି. ଏସ୍ କାଠେ । ସେ ଏବଂ ମୁଁ ଥରେ କେମ୍ବ୍ରିଜଠାରୁ ୧୭ ମାଇଲ ଦୂରବର୍ତ୍ତୀ ଇଲି ନାମକ ସ୍ଥାନକୁ ଚାଲିକରି ଯିବାପାଇଁ ସ୍ଥିର କଲୁ । ଇଲିଠାରେ ଏକ ବିଖ୍ୟାତ ଘୋଡାଦୌଡ ପଡିଆ ଓ ଖ୍ରୀଷ୍ଟାନ ଧର୍ମ ମନ୍ଦିର ଥିଲା । ଦିନେ କେମ୍ବ୍ରିଜରୁ ଆମେ ସକାଳ ସାତଟାବେଳେ ବାହାରି ଇଲି ଅଭିମୁଖରେ ଚାଲିଲୁ । ବାଟରେ ବହୁ ଗ୍ରାମ ପଡ଼ିଲା । ଆମେ ଭାରତୀୟ ହୋଇଥିବାଯୋଗୁଁ ଏବଂ ଖୁବ୍ ଜୋର୍‌ରେ ଚାଲୁଥିବା ଯୋଗୁଁ ଗ୍ରାମବାସୀମାନେ ଭାବିଲେ ଆମେ ଏକ ଚାଲିବା ପ୍ରତିଯୋଗିତାରେ ଯୋଗ ଦେଉଛୁ । ଦିନ ୧୧ଟା ବେଳେ ଆମେ ଇଲିରେ ପହଞ୍ଚିଲୁ । ସେତେବେଳେ ସେଠାର ଧର୍ମମନ୍ଦିରରେ ଏକ ପ୍ରାର୍ଥନା ଚାଲିଥାଏ । ଆମେ ଯାଇ ସେଥିରେ ଯୋଗଦେଲୁ । ଆମମାନଙ୍କୁ ସେଠାରେ ଦେଖି ଧର୍ମପ୍ରଚାରକ ତାଙ୍କର ଭାଷଣରେ ଭାରତର କଥା କହିଲେ । ମଧ୍ୟାହ୍ନ ଭୋଜନ ଶେଷକରି ଗୋଟାଏ ୧୫

ମିନଟରେ ଆମେ ଭଲ ଗ୍ରୁଡ଼୍ କେମ୍ବ୍ରିଜ ଅଭିମୁଖରେ ଫେରିଆସିଲୁ, ଯେପରିକି କଲେଜର ରାତ୍ରି-ଭୋଜନବେଳେ ଆମେ ପହଞ୍ଚିଯାଇଥିବୁ । କାର୍ଟି ଖୁବ୍ ଜୋର୍‌ରେ ଚାଲି ପାରୁଥିଲେ ମଧ୍ୟ ମୁଁ ତାଙ୍କ ସହିତ ଚାଲିପାରିଲି ନାହିଁ । ତେଣୁ ଆମେ ଗଡ଼ ହିସାବ ମଞ୍ଜୁର କରି ଛ'ଟା ପନ୍ଦର ମିନଟ୍‌ରେ କେମ୍ବ୍ରିଜରେ ପହଞ୍ଚିଲୁ । ଫେରିବାବେଳାକୁ ଚାରି ଘଣ୍ଟା ପରିବର୍ତ୍ତେ ଆମକୁ ପାଞ୍ଚଘଣ୍ଟା ଲାଗିଲା । ଫେରିବା ବାଟରେ ଯେଉଁ ସବୁ ଗାଁ ପଡ଼ିଲା ଆମେ ଦେଖିଲୁ, ମା' ମାନେ ତାଙ୍କର ପିଲାମାନଙ୍କୁ ଦୁଆରରେ ଠିଆ କରାଇଛନ୍ତି, ଦୁଇ ଜଣ ଭାରତୀୟ କଳା ଲୋକଙ୍କର ଚାଲିବା ପ୍ରତିଯୋଗିତା ଦେଖିବାପାଇଁ ।

ଶ୍ରୀ କାର୍ଟି ଜଣେ ରାଙ୍ଗ୍‌ଲର୍ ହୋଇ ଇଂଲଣ୍ଡରେ ଗୋଟିଏ ସ୍କୁଲରେ ପଢ଼ା-ଇଲେ । କିଛିକାଳ ଅସୁସ୍ଥ ହୋଇପଡ଼ି ସେ ଏକ ଡାକ୍ତରଖାନା କିମ୍ବା ନର୍ସିଂହୋମ୍‌ରେ ଚିକିତ୍ସିତ ହେଉଥିଲେ । ସେହି ସମୟରେ ଜଣେ ନର୍ସଙ୍କୁ ଭଲ ପାଇବାରୁ ତାଙ୍କୁ ସେ ବିବାହ କରିଥିଲେ । ଭାରତକୁ ଫେରିଆସି ବମ୍ବେରେ ଅଙ୍କଶାସ୍ତ୍ରର ଅଧ୍ୟାପକ ରୂପେ ସେ ଯୋଗଦେଇଥିଲେ ଓ ପରେ ଟିଚର୍ସ ଟ୍ରେନିଂ କଲେଜର ପ୍ରିନ୍‌ସିପାଲ୍ ହେଲେ । ତାଙ୍କର ବିବାହ ସୁଖକର ହୋଇ ନଥିଲା । ଥରେ ମୁଁ ବମ୍ବେ ଯାଇଥିବାବେଳେ କାର୍ଟି ମୋତେ ଭୋଜନକୁ ନିମନ୍ତ୍ରଣ କରିଥିଲେ । ସେ ଗୋଟିଏ ଫ୍ଲାଟ୍‌ରେ ରହୁଥିଲେ । ଶ୍ରୀମତୀ କାର୍ଟି ସେଠାରେ ଥିଲେ ମଧ୍ୟ ଆମ ସହିତ ସାନ୍ଧ୍ୟ ଭୋଜନରେ ଯୋଗଦେଲେ ନାହିଁ । ପରେ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ବିବାହ ବିଚ୍ଛେଦ ହେଲା । ମୋର ମନେ ହେଉଛି ଶ୍ରୀ କାର୍ଟି ବର୍ତ୍ତମାନ କର୍ଣ୍ଣାଟକରେ କେଉଁଠି ଅବସର ଜୀବନ ଯାପନ କରୁଛନ୍ତି ଓ ତାଙ୍କର ସ୍ତ୍ରୀ ଇଂଲଣ୍ଡରେ ଅଛନ୍ତି । ତାଙ୍କର ଏହି ପରି କଥା ଉଲ୍ଲେଖ କରିବାର କାରଣ ହେଉଛି, ଆନ୍ତର୍ଜାତିକ ବିବାହ । ବିଶେଷତଃ ଭାରତୀୟ ପୁରୁଷ ଓ ଇଂରେଜ ମହିଳାଙ୍କ ସହ ବିବାହ ଅନେକ କ୍ଷେତ୍ରରେ ସୁଖକର ହୁଏ ନାହିଁ । ଏହା ପୂର୍ବରୁ ମୋର ସ୍ୱର୍ଗୀୟ ବନ୍ଧୁ କେ. ବି. ସେଠ ଓ ଜଣେ ଇଂରେଜ ମହିଳାଙ୍କ ବିବାହ କଥା ମୁଁ ଉଲ୍ଲେଖ କରିଥିଲି । ଏବେ ଶ୍ରୀ କାର୍ଟିଙ୍କ ବିଷୟ ଉଲ୍ଲେଖ କଲି । ଏହିପରି ବହୁ ବିବାହର କଥା ମୁଁ ଜାଣେ । ଦୁଇଟି ସମାଜର ଚାଲି ଚଳନ ଓ ଦୃଷ୍ଟିକୋଣରେ ଏତେ ପ୍ରଭେଦ ଦେଖାଯାଏ ଯେ, ବିବାହିତ ବ୍ୟକ୍ତିମାନଙ୍କ ମଧ୍ୟରେ, ବିଶେଷତଃ ସେମାନେ ବୟସ୍କ ହୋଇଥିଲେ ପରସ୍ପର ସହିତ ଖାପ ଖୁଆଇ ଚଳିବା କଷ୍ଟକର ହୋଇପଡ଼େ । ଇଂଲଣ୍ଡ ଓ ଭାରତର ପୃଥକ୍ ପୃଥକ୍ ସାମାଜିକ ବ୍ୟବସ୍ଥାକୁ ଛାଡ଼ି ଦିଆଯାଉ; ଗୋଟିଏ ସମାଜ ମଧ୍ୟରେ ବୟସ୍କମାନଙ୍କ ମଧ୍ୟରେ ବିବାହ ମଧ୍ୟ ଅନେକ ସମୟରେ ସୁଖକର ହୋଇ ନଥାଏ । କାରଣ ବିବାହିତ ବ୍ୟକ୍ତିଙ୍କର ମାନସିକ ଅବସ୍ଥା ପୂର୍ବରୁ ଗଠିତ ହୋଇସାରିଥାଏ ଓ ପରସ୍ପର ସହିତ ଖାପ ଖୁଆଇ ଚଳାଇବା ଅବସ୍ଥାରେ ଏହା ନଥାଏ ।

କେମ୍ବ୍ରିଜରେ ମୋର ସମସାମୟିକ ବ୍ୟକ୍ତିମାନଙ୍କ ମଧ୍ୟରେ ଅନେକ ବୟୋଜ୍ୟେଷ୍ଠ ବ୍ୟକ୍ତି ଥିଲେ, ଯେଉଁମାନେ କି ଭାରତରେ ଶିକ୍ଷାଗତ ଅଭିଜ୍ଞତା ଅର୍ଜନ କରି ଅଧିକ ଜ୍ଞାନାର୍ଜ୍ଜନ ପାଇଁ କେମ୍ବ୍ରିଜ ଆସିଥିଲେ । ଏମାନଙ୍କ ମଧ୍ୟରୁ ମୁଁ ଯେଉଁମାନଙ୍କ ଘନିଷ୍ଠ ସମ୍ପର୍କରେ ଆସିଥିଲି ସେମାନେ ହେଲେ, ଅଧ୍ୟାପକ କେ. ଏମ୍. ଖାଣ୍ଡେ, ଅଧ୍ୟାପକ ପି. ଏକାମ୍ବରମ୍, ଅଧ୍ୟାପକ କେ. ସି. ମେହେନ୍ଦ୍ରା ଓ ଅଧ୍ୟାପକ ଏମ୍. କେ. ସିଦ୍ଧାନ୍ତ ।

ଅଧ୍ୟାପକ ଖାଣ୍ଡେ ପୁନା ଫର୍ଗୁସନ କଲେଜରେ ଇଂରାଜୀ ଅଧ୍ୟାପକ ଥିଲେ । ଓ ଅଧିକ ଅଧ୍ୟୟନ ପାଇଁ କେମ୍ବ୍ରିଜ ଆସିଥିଲେ । ସେ ଟ୍ରାଇପସ୍ ଦ୍ୱିତୀୟ ଭାଗ ନେଇଥିଲେ । ଆମ ପରସ୍ପରଙ୍କ ମଧ୍ୟରେ ବେଶ୍ ବନ୍ଧୁତା ଥିଲା । ମୁଁ ପୂର୍ବରୁ ଉଲ୍ଲେଖ କରିଛି ଯେ, ସେ, ସୁଭାଷ ବୋଷ ଓ ମୁଁ ଲିଟନ୍ କମିଟି ଆଗରେ ଭାରତୀୟ ଛାତ୍ରମାନଙ୍କର ପ୍ରତିନିଧିତ୍ୱ କରିଥିଲୁ । ଏହି କମିଟି ବ୍ରିଟିଶ ବିଶ୍ୱବିଦ୍ୟାଳୟମାନଙ୍କରେ ଭାରତୀୟ ଛାତ୍ରମାନଙ୍କର ସମସ୍ୟା ଅନୁଧ୍ୟାନ କରୁଥିଲେ । ଅଧ୍ୟାପକ ଖାଣ୍ଡେ ଭାରତକୁ ଫେରିବା ପରେ ଫର୍ଗୁସନ କଲେଜରେ ତାଙ୍କ ପୁରୁଣା ପଦରେ ଯୋଗ ଦେଇଥିଲେ । ପରେ ସେ ପୁନାରେ ନୂଆ ହୋଇ ହୋଇଥିବା ନିୱାଡିଆ କଲେଜର ପ୍ରିନ୍‌ସିପାଲ ହେଲେ । ତା'ପରେ ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧ୍ୟାପକ ରୂପେ ସେ ଆନାମାଲାଇ ବିଶ୍ୱବିଦ୍ୟାଳୟରେ ଯୋଗଦେଲେ ।

ଭାରତୀୟ 'ମଜଲିସ୍' କଥା ମୁଁ ପୂର୍ବରୁ ଉଲ୍ଲେଖ କରିଛି । ଏହାବ୍ୟତୀତ ଭାରତୀୟ ସମସ୍ୟାମାନଙ୍କର ଗଭୀର ଆଲୋଚନାପାଇଁ 'ୟୁନିଟି ଲିଗ୍' ନାମରେ ଅନ୍ୟ ଏକ ସଂସ୍ଥା ଥିଲା । ନେତାଜୀ ସୁଭାଷ, ଖାଣ୍ଡେ ଓ ଆହୁରି ଅନେକ ଏହାର ସଭ୍ୟ ଥିଲେ । ଗୋଟିଏ ବର୍ଷ ମୁଁ ଏହାର ସଭାପତି ଥିଲି । ଅନ୍ୟ ଗୋଟିଏ ବର୍ଷ ଅଧ୍ୟାପକ ଖାଣ୍ଡେ ଥିଲେ । ଭାରତୀୟ ଏକତା ସମ୍ପର୍କୀୟ ବିଭିନ୍ନ ସମସ୍ୟାର ଆଲୋଚନା ଏଥିରେ ହେଉଥିଲା । ଥରେ ଗୋଟିଏ ମିଟିଂରେ, ମୋର ମନେପଡୁଛି, ଏସ୍. ଗୋବିନ୍ଦରାଜୁଲୁ ଅବିଭକ୍ତ ମାଦ୍ରାଜ ପ୍ରଦେଶରେ ସାମ୍ପ୍ରଦାୟିକ ଭାବ ସମ୍ପର୍କରେ ଏକ ପ୍ରବନ୍ଧ ପାଠ କରିଥିଲେ । ଗୋବିନ୍ଦରାଜୁଲୁ ପରେ ମାଦ୍ରାଜ ଓ ଆନ୍ଧ୍ର ପ୍ରଦେଶର ଡ. ପି. ଆର୍. ଓ ଭେଙ୍କଟେଶ୍ୱର ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ତାଙ୍କର ଏହି ପ୍ରଥିତ ପ୍ରବନ୍ଧରେ ସେ ବ୍ରାହ୍ମଣ ଓ ବ୍ରାହ୍ମଣେତରଙ୍କ ସମସ୍ୟାର ଏକ ସୁନ୍ଦର ବିଶ୍ଳେଷଣ କରିଥିଲେ । ଅଧ୍ୟାପକ ଖାଣ୍ଡେ 'ୟୁନିଟି ଲିଗ୍'ର କାର୍ଯ୍ୟରେ ପ୍ରଧାନ ଭାଗ ନେଉଥିଲେ । ଭାରତକୁ ଆସିଲା ପରେ ବହୁ ଘଟଣାରେ ଅଧ୍ୟାପକ ଖାଣ୍ଡେଙ୍କ ସହିତ ମୋର ଦେଖା ସାକ୍ଷାତ୍ ହୋଇଛି । ଥରେ ପୁନାରେ ତାଙ୍କ ଘରେ ମୁଁ ସପରିବାର ରହିଥିଲି । ତାହା ୧୯୨୭/୨୮ ମସିହାର କଥା । ସେତେବେଳେ ଆମେ ଦକ୍ଷିଣ ଭାରତ ଭ୍ରମଣରେ ଯାଇଥିଲୁ । □ □

# ବୀରବଲ ସାହ୍ନି

ବର୍ତ୍ତମାନ ଉତ୍କଳର ବୀରବଲ୍ ସାହ୍ନିଙ୍କ ବିଷୟ ମୁଁ ପୁଣି ଉଲ୍ଲେଖ କରିବି । ଭାରତକୁ ଫେରିବାପରେ ସେ ବନାରସ ବିଶ୍ୱବିଦ୍ୟାଳୟର ଉଦ୍ଭିଦବିଜ୍ଞାନ ବିଭାଗର ଅଧ୍ୟାପକ ହୋଇଥିଲେ । ପରେ ସେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ସେହି ବିଭାଗ ଅଧ୍ୟାପକ ରୂପେ ଯୋଗଦେଇଥିଲେ । ସେ ବୀରବଲ୍ ସାହ୍ନି ଇନ୍‌ଷ୍ଟିଚ୍ୟୁଟ୍ ନାମକ ପେଲିଓବଟାନି (ନିଖାତକ ଉଦ୍ଭିଦବିଦ୍ୟା) ଅନୁଷ୍ଠାନ ପ୍ରତିଷ୍ଠା କରି ତା'ର ସ୍ଥାପକ ଡିରେକ୍ଟର ହେଲେ ଓ ଲକ୍ଷ୍ନୌଠାରେ ହିଁ ତାଙ୍କର ମୃତ୍ୟୁ ହେଲା । ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଆମ୍ଭେ ଦୁହେଁ ପରମ ବନ୍ଧୁ ଥିଲୁ । ମୁଁ ବୀରବଲ ସାହ୍ନି ଇନ୍‌ଷ୍ଟିଚ୍ୟୁଟ୍ ସହିତ ଏ ପର୍ଯ୍ୟନ୍ତ ସଂଯୁକ୍ତ । ବର୍ତ୍ତମାନ ତାଙ୍କର ସହଧର୍ମିଣୀ ଶ୍ରୀମତୀ ସାବିତ୍ରୀ ସାହ୍ନି ହେଉଛନ୍ତି ଏହାର ଡିରେକ୍ଟର । ୧୯୬୭ ମସିହାରେ ତାଙ୍କର ଶ୍ରାଦ୍ଧ ଦିବସରେ ମୁଁ ଯାହା ଲେଖିଥିଲି ଏଠାରେ ତାହା ପ୍ରକାଶ କରିବା ଉଚିତ ମନେକରୁଛି । ପ୍ରବନ୍ଧର ଶିରୋନାମା ଥିଲା "ବୀରବଲ ସାହ୍ନିଙ୍କ ମାନବିକତା ।"

## ସାହ୍ନିଙ୍କ ମାନବତା

ଜଣେ ଉଚ୍ଚକୋଟୀର ମାନବଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଶ୍ରଦ୍ଧା ଜ୍ଞାପନ-କରିବା ଏକ ପରମ ସୁଯୋଗ ବୋଲି ମୁଁ ମନେକରୁଛି । ପଚିଶ ବର୍ଷରୁ ଅଧିକ ହେବ, ଠିକ୍ କହିଲେ ାଉନବର୍ଷ ତଳେ ମୁଁ କେମ୍ବ୍ରିଜଠାରେ ବୀରବଲ ସାହ୍ନିଙ୍କୁ ଭେଟିଥିଲି । ସେହି ବର୍ଷ ମୁଁ କେମ୍ବ୍ରିଜ ଯାଇଥିଲି । ସେ ମୋଠାରୁ ବର୍ଷେ କିମ୍ବା ଦୁଇବର୍ଷ ସିନିଅର୍ ଥିଲେ । କେମ୍ବ୍ରିଜରେ ନିଜର ସହପାଠୀମାନଙ୍କୁ, ବିଶେଷତଃ ଭାରତୀୟ ଛାତ୍ରମାନଙ୍କୁ ଭେଟିବାର ବହୁ ସୁଯୋଗ ମିଳେ । ମୋର ମନେପଡୁଛି, ଆର୍. ପି. ପାରାଞ୍ଜପେ ଥରେ କହିଥିଲେ, କେମ୍ବ୍ରିଜ କିମ୍ବା ଅକ୍ସଫୋର୍ଡକୁ ଆସିଲେ ତୁମେ ଭାରତବର୍ଷକୁ ଅଧିକ ଭଲଭାବରେ ଜାଣିପାରିବ । ଅନେକାଂଶରେ ଏହା ସତ୍ୟ, କାରଣ ଭାରତର ସବୁ ଅଞ୍ଚଳରୁ ଆସିଥିବା ଛାତ୍ରମାନଙ୍କ ସଂପର୍କରେ ଆସିବାର ସୁଯୋଗ ଏଠାରେ ମିଳେ । ଗୃ' ଭୋଜନରେ, ସଭାସମିତିରେ, ନଈକୂଳରେ, ଗବେଷଣାଗାରରେ—ସର୍ବତ୍ର ସାକ୍ଷାତର ସୁଯୋଗ ଘଟେ । ଯାହାହେଉ ସାହ୍ନି ଓ ମୁଁ ପରସ୍ପରକୁ ଚିହ୍ନି ବନ୍ଧୁ ହୋଇଗଲୁ ।

# ସରଳ ବ୍ୟକ୍ତିତ୍ୱ

ତାଙ୍କର ସରଳ ଶାନ୍ତ ବ୍ୟକ୍ତିତ୍ୱ ଲକ୍ଷଣ କରି ମୁଁ ତାଙ୍କଆଡ଼କୁ ଟାଣି ହୋଇଗଲି । ଘନିଷ୍ଠତା ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କର ବିଶ୍ବପ୍ରେମଯୁକ୍ତ ଦୃଷ୍ଟିକୋଣ ମୋତେ ଆକର୍ଷିତ କଲା । ତାଙ୍କର ପିତା ବ୍ରାହ୍ମ ସମାଜର ଜଣେ ସଭ୍ୟ ଥିବାଯୋଗୁ ସେ ଏକ ବିଶ୍ବଯୁଷ୍ଟି ବାତାବରଣ ମଧ୍ୟରେ ବଢ଼ି ଆସିଥିଲେ । ଅନ୍ୟ ପକ୍ଷରେ ମୁଁ ରକ୍ଷଣଶୀଳ ବାତାବରଣ ମଧ୍ୟରେ ବଢ଼ିଆସିଥିଲେ ମଧ୍ୟ କେମ୍ବ୍ରିଜକୁ ଆସିବାବେଳକୁ ମୋର ଜୀବନ ଅଧିକରୁ ଅଧିକ ବିଶ୍ବପ୍ରେମବାଦୀ ହୋଇଥିଲା । ସାହ୍ନିଙ୍କର ସରଳ ଓ ନିରାଡ଼ମ୍ବର ବ୍ୟକ୍ତିତ୍ୱ ଏବଂ ବିଶ୍ବଯୁଷ୍ଟି ଦୃଷ୍ଟିକୋଣ, ଏ ଦୁଇଟି ଆମକୁ ପରସ୍ପର ପ୍ରତି ଆକୃଷ୍ଟ କରିଥିଲା । ପରେ ଯେବେ ମୁଁ ଭକ୍ତି ଦିବ୍ୟଜ୍ଞାନରେ ଆଗ୍ରହ ପ୍ରକାଶ କଲି ତାହା ଆମର ବନ୍ଧୁତାକୁ ଆହୁରି ଦୃଢ଼ କରିବାରେ ସାହାଯ୍ୟ କଲା । ଏପରି ଗୋଟିଏ ଦିନ ଯାଏ ନାହିଁ ଯେଉଁଦିନ ଆମେ ପରସ୍ପରକୁ ନ ଭେଟୁ । ଆମେ ଉଭୟ କେମ୍ବ୍ରିଜଠାରେ ବହୁଦିନ ଧରି ରହିଥିଲୁ । ସେ ନଅ ବର୍ଷ ଥିଲେ ଏବଂ ମୁଁ ସାତ ବର୍ଷ ଥିଲି । ଆମର ସେତେବେଳର ବହୁ ବନ୍ଧୁ ଓ ସମସାମୟିକ ବ୍ୟକ୍ତି ସେମାନଙ୍କ ନିଜ ନିଜ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଥିଲେ । ଅଳ୍ପ କେତେଜଣଙ୍କ ନାମ ଉଲ୍ଲେଖ କରାଯାଇପାରେ । ସେମାନେ ହେଲେ—ପି. ସି. ମହଲାନବିସ୍, ମହମ୍ମଦ ଆଫଜାଲ୍ ହୁସେନ୍ (ବର୍ତ୍ତମାନ ପାକିସ୍ତାନରେ), ଦେଓ୍ୱାନ ଆନନ୍ଦ କୁମାର, କେ. ସି. ମହେନ୍ଦ୍ର, ସି. ଡି. ଦେଶମୁଖ, ଏନ୍. ଆର୍. ପିଲେ, ଏସ୍. ଏନ୍. ମଜୁମଦାର୍, ସି. ଭି. ହନୁମନ୍ତରାଓ, ଡାକ୍ତର ଜର୍ଜ ମାଥାଇ, ସୁବିଖ୍ୟାତ ଗଣିତଜ୍ଞ ରାମାନୁଜନ୍ ଓ ଆର୍. ଏସ୍. ଇନାମ୍‌ଦାର୍ । ଏମାନେ ଆମ ଉଭୟଙ୍କର ବନ୍ଧୁ ଥିଲେ । ସେଥିଯୋଗୁ ଆମକୁ ଏକାଠି ହେବାର ଅଧିକ ସୁଯୋଗ ମିଳୁଥିଲା ।

ଜାତୀୟ ଭାବନା ଆମ ମନକୁ ଅଭିଭୂତ କରି ରଖିଥିଲା । ସାହ୍ନି ଏବଂ ମୁଁ ଏହାର ବ୍ୟତିକ୍ରମ ନ ଥିଲୁ । କିନ୍ତୁ ସେଥିପାଇଁ ଅଧ୍ୟୟନ ପ୍ରତି ଆମର ଅବହେଳା ଦେଖା ଯାଇନଥିଲା । ବରଂ ଏହାଦ୍ୱାରା ଆମେ ଉତ୍ସାହିତ ହୋଇ ଲାଗିପଡ଼ିଲୁ, ଯେପରିକି ଆମର କାର୍ଯ୍ୟଦ୍ୱାରା ଆମେ ଦେଶର ଗୌରବ ବଢ଼ାଇପାରିବୁ ।

ସେ ପଢ଼ାପଢ଼ିରେ ଖୁବ୍ ବ୍ୟସ୍ତ ରହୁଥିଲେ ମଧ୍ୟ କମ୍ ରହସ୍ୟପ୍ରିୟ ନ ଥିଲେ । ବହୁ ରହସ୍ୟମୟ କାହାଣୀ କହି ସେ ଆମକୁ ହସାଉଥିଲେ ଏବଂ ଛାତ୍ରମାନେ ପରସ୍ପର ପ୍ରତି ଯେଉଁ ଥଟ୍ଟା ପରିହାସ କରନ୍ତି ସେଥିରେ ସେ ବେଶ୍ ଆନନ୍ଦ ପାଉଥିଲେ ।

ମୋ ଆଗରୁ ସେ କେମ୍ବ୍ରିଜ ଛାଡ଼ିଲେ । ମୁଁ ଭାରତକୁ ଫେରିଆସିବା ପରେ ଆମେ ପରୀକ୍ଷକ ଭାବରେ ଓ କେତେକ କମିଟିର ସଭ୍ୟ ଭାବରେ ଅନେକ ସମୟରେ ସାକ୍ଷାତ୍ କରୁଥିଲୁ । ଲାହୋର ବିଜ୍ଞାନ କଂଗ୍ରେସବେଳେ ଲାହୋରଠାରେ ତାଙ୍କଘରେ ମୁଁ ଅତିଥି ହୋଇଥିଲି ଏବଂ ତାଙ୍କ ପରିବାରର ସମସ୍ତଙ୍କ ସହିତ ପରିଚିତ ହୋଇଗଲି । ଭାରତୀୟ ବିଜ୍ଞାନ କଂଗ୍ରେସର ମାନ୍ଦ୍ରାଜ ଅଧିବେଶନରେ ସେ ସାଧାରଣ ସଭାପତି ନିର୍ବାଚିତ ହୋଇଥିବାବେଳେ ମୁଁ ସାଧାରଣ ସମ୍ପାଦକ ହୋଇଥିଲି । ସେ କିପରି ସ୍ୱାଧୀନଚେତା ଥିଲେ ତା'ର ଗୋଟିଏ ଦୃଷ୍ଟାନ୍ତ ଉଲ୍ଲେଖ କରୁଛି । ତାଙ୍କୁ ରାଜଭବନର ଅତିଥି ହେବାପାଇଁ ନିମନ୍ତ୍ରଣ ଆସିଥିଲା । କିନ୍ତୁ ସେ ତାହା ପ୍ରତ୍ୟାଖ୍ୟାନ କରି ଏମ୍. ଓ. ପି. ଆୟାଙ୍ଗାରଙ୍କର ଅତିଥି ହୋଇଥିଲେ ।

## ସୁବକ୍ତା

ସେ ଜଣେ ଭଲ ବକ୍ତା ଥିଲେ ଏବଂ ଇଂରେଜୀ ଭାଷା ଉପରେ ତାଙ୍କର ଅସାମାନ୍ୟ ଦକ୍ଷତା ଥିଲା । ଥରେ ମୁଁ ତାଙ୍କୁ ବକ୍ତୃତା ଦେବାପାଇଁ ରେଭେନ୍‌ସା କଲେଜକୁ ନିମନ୍ତ୍ରଣ କରିଥିଲି । ସେ କଣ୍ଟିନେଣ୍ଟାଲ୍ ଡ୍ରିଫ୍‌ଟ (ମହାଦେଶ ବିଚଳନ) ଓ ପାଷାଣୀଭୂତ ଉଦ୍ଭିଦ ସମ୍ପର୍କରେ ଭାଷଣ ଦେଇଥିଲେ । ସେ ତାଙ୍କର ବିଷୟକୁ ଏପରି ସୁନ୍ଦର ଭାବରେ ବ୍ୟାଖ୍ୟା କରିଥିଲେ ଯେ ଓଡ଼ିଆ ଭାଷାରେ ପ୍ରବଚନ ଉଦ୍ଧାର କରି ମୁଁ ତାଙ୍କୁ ଧନ୍ୟବାଦ ଦେଇଥିଲି । ଏହି ପ୍ରବଚନଟି ହେଉଛି—

"ସ୍ୱର୍ଗରୁ ଆସିଲା କେଉଁ ବିନ୍ଧାଣୀ,
ଶୁଖିଲା କାଠରୁ ବାହାରିଲା ପାଣି ।"

ସେ ସମୟର ଛାତ୍ରମାନେ ଏବେ ମଧ୍ୟ ମୋତେ ସେ ଉଦାହରଣ କଥା ମୋତେ ସ୍ମରଣ କରାଇ ଦିଅନ୍ତି ।

ଅସୀମ ଧୈର୍ଯ୍ୟର ସହିତ ସେ ଅସୁବିଧା ସହିପାରନ୍ତି । ଗୋଟିଏ ଘଟଣା ମନେପଡ଼ୁଛି । ନାଗପୁର ବିଜ୍ଞାନ କଂଗ୍ରେସ ସମୟରେ ସେ ଓ ମୁଁ ମୋହଗାଓଁ କଲାଣ ନାମକ ଏକ ଗ୍ରାମକୁ ଏକାଠି ଯାତ୍ରା କରିଥିଲୁ । ତାଙ୍କର ଉଦ୍ଦେଶ୍ୟ ହେଲା ପାଷାଣୀଭୂତ ଉଦ୍ଭିଦ ସଂଗ୍ରହ ଓ ମୋର ଉଦ୍ଦେଶ୍ୟ ଥିଲା ଏକ ନୂତନ ସ୍ଥାନ ପରିଦର୍ଶନ । ଆମେ ଗୋଟିଏ ଗାଁର ପ୍ରାଥମିକ ବିଦ୍ୟାଳୟରେ ଚଟାଣ ଉପରେ ଶୋଇପଡ଼ି ରାତି ଯାପନ କଲୁ । ସେଠାରେ କୌଣସି ଆଧୁନିକ ପାଇଖାନା ନ ଥିଲା । ମୋ ପକ୍ଷରେ ଏ ଅନୁଭୂତି

ନୂଆ ନ ଥିଲା । କାରଣ ମୋର ବାଲ୍ୟ ଜୀବନ ଗୋଟିଏ ଗାଁରେ କଟିଥିଲା । ଏପରିକି ସହର ଜୀବନ ମଧ୍ୟ ସେପରି ଉଲ୍ଲେଖ୍ୟ ନ ଥିଲା । କିନ୍ତୁ ଗୋଟିଏ ବଡ଼ ସହରରେ ଏକ ଆଧୁନିକ ପରିବାରରେ ବନ୍ଧୁ ସାହ୍ନି କିପରି ଅସୁବିଧା ସହିପାରନ୍ତି ଦେଖି ସେଥିରେ ମୁଁ ଅବାକ୍ ହୋଇଯାଇଥିଲି ।

ଆମେ ପାଷାଣୀଭୂତ ଉଦ୍ଭିଦ ଖୋଜିବାରେ ଲାଗିଲୁ । ବିଚିତ୍ର ଦେଖା ଯାଉଥିବା ଏହିପରି ଗୋଟିଏ ଉଦ୍ଭିଦ ମୁଁ ହିଁ ଏଠି ପ୍ରଥମେ ପାଇ ତାଙ୍କୁ ଦେଲି । ପରେ ଏହି ଧରଣର ଆହୁରି କୋଡ଼ିଏ ଉଦ୍ଭିଦ ଆମେ ସଂଗ୍ରହ କଲୁ । ଲକ୍ଷ୍ନୌ ଫେରିଆସିବା ପରେ ସାହ୍ନି ପରୀକ୍ଷା କରିବା ପରେ ଏହାକୁ ଗୋଟିଏ ଫଳ ବୋଲି ଆବିଷ୍କାର କଲେ । ମୋର ନାମକୁ ଏହି ଆବିଷ୍କାର ସହିତ ଜଡ଼ିତ କରିବାପାଇଁ ସେ ଏହାର ନାମକରଣ କଲେ 'ଏନିଗ୍ମୋକାରପନ୍ ପରିଜାଇ (Enigmocarpon Parijai) ଏହି ଫଳ ଆଉ ଏକ ବିଚିତ୍ର ବା ଅଦ୍ଭୁତ ଫଳ ବୋଲି ନାହିଁ । ଏହାର ଫୁଲ ଏବଂ ମଞ୍ଜି ମଧ୍ୟ ମିଳିଲାଣି ଏବଂ ଏହି ପାଷାଣୀଭୂତ ଉଦ୍ଭିଦର ନୂତନ ନାମକରଣ ହୋଇଛି 'ସାହ୍ନିଆନ୍ଥସ୍ ପରିଜାଇ' (Sahnianthus Parijai) ଏହିପରି ଭାବରେ ଆମର ଦୀର୍ଘକାଳର ବନ୍ଧୁତାର ସ୍ମାରକରୂପେ ଆମ ଉଭୟଙ୍କର ନାମ ଚିରଦିନ ପାଇଁ ଗ୍ରଥିତ ହୋଇଯାଇଛି ।

ସାହ୍ନି ଏହିପରି ଜଣେ ବ୍ୟକ୍ତିଥିଲେ ଏବଂ ଆମ ଉଭୟଙ୍କର ବନ୍ଧୁତା ଏହିପରି ଥିଲା ।



# କେମ୍ବ୍ରିଜରେ କେତେଜଣ ବିଶିଷ୍ଟ ଭାରତୀୟ

ଆଉ ଜଣେ ବନ୍ଧୁ ହେଲେ ଅଧ୍ୟାପକ ଟି. ଏକାମ୍ବରମ୍, ଯେ ମାନ୍ଦ୍ରାଜ ପ୍ରେସିଡେନ୍ସି କଲେଜରୁ ଆସିଥିଲେ ଓ ଉଦ୍ଭିଦ ଶରୀର-ତତ୍ତ୍ୱ ସମ୍ପର୍କରେ ଡକ୍ଟର ଏଫ୍. ଏଫ୍. ବ୍ଲାକମ୍ୟାନ୍‌ଙ୍କ ନିର୍ଦ୍ଦେଶରେ ଗବେଷଣା କରୁଥିଲେ । ଆମେ ଉଭୟ ଏକା ଗୃହରେ ଏକା ଅଧ୍ୟାପକଙ୍କ ନିର୍ଦ୍ଦେଶରେ କାର୍ଯ୍ୟ କରୁଥିଲୁ । ତେଣୁ ଆମେ ପରସ୍ପର ସମ୍ପର୍କରେ ଆସି ବନ୍ଧୁ ହୋଇଗଲୁ । ସେ ପିଏଚ୍. ଡି କରି ଭାରତ ଫେରିଆସିଲେ ଓ କିଛିକାଳପାଇଁ ଉଦ୍ଭିଦ ବିଦ୍ୟାର ବିଶ୍ୱବିଦ୍ୟାଳୟ ଅଧ୍ୟାପକ ହେଲେ । ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଆମେ ପରସ୍ପର ବନ୍ଧୁ ରହିଥିଲୁ ।

ଅଧ୍ୟାପକ କେ ସି. ମେହେନ୍ଦ୍ରା ଆଗ୍ରା କଲେଜରୁ ଉଦ୍ଭିଦ ବିଦ୍ୟା ସମ୍ପର୍କରେ ଅଧିକ ଜ୍ଞାନ ଲାଭ କରିବାପାଇଁ କେମ୍ବ୍ରିଜ ଆସିଥିଲେ । ତାଙ୍କର ବିଷୟ ଥିଲା ପ୍ଲାଣ୍ଟ ପାଥୋଲୋଜି (ଉଦ୍ଭିଦ ରୋଗ ବିଦ୍ୟା) । ଆମେ ଏକା ଗବେଷଣାଗାରରେ କାର୍ଯ୍ୟ କରୁଥିବା ଯୋଗୁଁ ପରସ୍ପର ସମ୍ପର୍କରେ ଆସି ବନ୍ଧୁ ହୋଇଗଲୁ । ଅଧ୍ୟାପକ ମେହେନ୍ଦ୍ରା ପିଏଚ୍. ଡି କରି ଆଗ୍ରା ଫେରିଗଲେ ଓ ସେଠାରେ ଉଦ୍ଭିଦ ବିଦ୍ୟାର ବିଶ୍ୱବିଦ୍ୟାଳୟ ଅଧ୍ୟାପକ ହେଲେ । ଆମେ ଅନେକ ସମୟରେ ଭାରତୀୟ ବିଜ୍ଞାନ କଂଗ୍ରେସରେ ଓ ପରୀକ୍ଷକ ଭାବରେ ଏକାଠି ହେଉଥିଲୁ । ତାଙ୍କର କେତେକ ଛାତ୍ର ଉଦାହରଣ ସ୍ୱରୂପ ଡକ୍ଟର ପି. ମାହେଶ୍ୱରୀ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ହୋଇଥିଲେ ।

ଉଚ୍ଚ ଗବେଷଣାପାଇଁ ଆସିଥିବା ଆଉ ଜଣେ ଛାତ୍ର ଥିଲେ, ଲାହୋରର ମିଆଁ ମହମ୍ମଦ୍ ସାଦି । ସେ ପର୍ସିଆନ ଭାଷାରେ ଜଣେ ପଣ୍ଡିତ ଥିଲେ ଓ ଲାହୋରରେ ଅଧ୍ୟାପକ ହୋଇଥିଲେ । ଭାଷାତତ୍ତ୍ୱରେ ଗବେଷଣା କରିବାପାଇଁ ସେ କେମ୍ବ୍ରିଜ ଆସିଥିଲେ । ଆମେ ଅନେକ ସମୟରେ ଏକାଠି ଭାରତର ବିଭିନ୍ନ ସମସ୍ୟା ଆଲୋଚନା କରୁଥିଲୁ । ସେ ଭାରତ ଫେରିଯାଇ ଲାହୋରର ଗୋଟିଏ କଲେଜର ପ୍ରିନ୍‌ସିପାଲ ହୋଇଥିଲେ । ଏବେ ଅନୁସନ୍ଧାନରୁ ମୁଁ ଜାଣିପାରିଛି ଯେ, ଅଳ୍ପ କେତେ ବର୍ଷ ହେବ ସେ ମରିଗଲେଣି । କେମ୍ବ୍ରି-

ଜରେ ମୋର ଦୀର୍ଘ ଅବସ୍ଥାନ କାଳ ମଧ୍ୟରେ ବହୁ ଭାରତୀୟ ଛାତ୍ର ଯେଉଁମାନେ କି ନିଜ ନିଜ କ୍ଷେତ୍ରରେ ଉଚ୍ଚ ସମ୍ମାନ ଲାଭ କରିଛନ୍ତି, ସେମାନେ ସେଠାରେ ଅଧ୍ୟୟନ କରୁଥିଲେ । ମୁଁ ଶ୍ରୀ ଚିନ୍ତାମଣି ଦେଶମୁଖ୍ ଓ ଜଷ୍ଟିସ ରାଜାଧ୍ୟକ୍ଷଙ୍କ ସମ୍ପର୍କରେ ଉଲ୍ଲେଖ କରିଛି । ଅନ୍ୟମାନଙ୍କ ମଧ୍ୟରୁ ବହୁ ବ୍ୟକ୍ତିଙ୍କର ନାମ ମୋର ମନେପଡ଼ୁଛି । ମୁଁ କେମ୍ବ୍ରିଜଠାରେ ସେମାନଙ୍କ ସାନ୍ନିଧ୍ୟରେ ଆସିଥିଲି ଓ ଭାରତକୁ ଫେରି ସେମାନଙ୍କ ସହିତ ସମ୍ପର୍କ ରଖିଥିଲି । ଯେଉଁ ପ୍ରଥମ ନାମଟି ମନେପଡୁଛି, ସେ ହେଲେ ଜଷ୍ଟିସ୍ ଜୀବନଲାଲ୍ କପୁର୍ । ସେ ତତ୍କାଳୀନ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରୁ ଆସିଥିଲେ । ସେ ଆଇନ୍ ଶାସ୍ତ୍ର ଅଧ୍ୟୟନକରି ବାରିଷ୍ଟର-ଆଟ୍-ଲ ହୋଇଥିଲେ । କେମ୍ବ୍ରିଜରେ ଥିବାବେଳେ ସେ କୁମାରୀ ମେହେଣ୍ଟାଙ୍କୁ ବିବାହ କରିଥିଲେ । କୁମାରୀ ମେହେଣ୍ଟା ବୋଧହୁଏ ପଞ୍ଜାବରୁ ଆସି ସ୍ଥାନୀୟ ଏକ ମହିଳା କଲେଜର ଛାତ୍ରୀଥିଲେ । ଜଷ୍ଟିସ କପୁର ଜଣେ ଖାଣ୍ଟି ଲୋକ ଥିଲେ, ଯେ କି ନିଜ ମନର କଥା ଟୋକ୍ ଠୋକ୍ କହିଦେବା ପାଇଁ ଡରୁ ନ ଥିଲେ । ସେ ଭାରତକୁ ଫେରି ପେସାୱାରଠାରେ ଓକିଲାତି କଲେ । ଭାରତ ଭାଗଭାଗ ହୋଇଯିବା ପରେ ସେ ଭାରତକୁ ଚାଲିଆସି ପଞ୍ଜାବ ହାଇକୋର୍ଟର ଜଣେ ବିଚାରପତି ଭାବରେ ନିଯୁକ୍ତ ହୋଇଥିଲେ ଓ ସୁପ୍ରିମକୋର୍ଟ ବିଚାରପତି ଭାବରେ ଅବସର ନେଲେ । ଭାରତ ସରକାରଙ୍କ ପକ୍ଷରୁ ନିଯୁକ୍ତ ବିଭିନ୍ନ ତଦନ୍ତ କମିଶନ୍‌ରେ ସେ ଏବେ ମଧ୍ୟ ରହିଛନ୍ତି । ବର୍ତ୍ତମାନ ମହାତ୍ମାଗାନ୍ଧୀଙ୍କ ହତ୍ୟା ସମ୍ପର୍କରେ ଯେଉଁ କମିଶନ୍ ଗଢ଼ାଯାଇଛି, ସେଥିରେ ସେ ଅଛନ୍ତି । ମଝିରେ ମଝିରେ ଆମେ ଦୁହେଁ ସାମାଜିକ ମିଳନରେ ଏକତ୍ର ହେଉ । ଗତବର୍ଷ ଦିଲ୍ଲୀଠାରେ କେମ୍ବ୍ରିଜର ପୁରାତନ ଛାତ୍ରମାନଙ୍କର ଏକ ମିଳନରେ ଆମେ ଏକତ୍ର ହୋଇଥିଲୁ । ଜଷ୍ଟିସ କପୁର ଓ ଶ୍ରୀମତୀ କପୁର କେମ୍ବ୍ରିଜରେ ତାଙ୍କର ପୁରୁଣା ଦିନଗୁଡ଼ିକର ସମ୍ପର୍କରେ ବହୁକଥା କହିଥିଲେ ।

ପୁରୁଷୋତ୍ତମ ଦାସ ବିକ୍ରମ ଦାସ, ମରଚ୍ୟାଣ୍ଟ ନାମକ ଜଣେ ଭଦ୍ରବ୍ୟକ୍ତିଙ୍କ ସହିତ ମୋର କେତେକ ସ୍ମୃତି ମନେପଡୁଛି । ସେ ଶ୍ରୀମତୀ ମରଚ୍ୟାଣ୍ଟ ଓ ଶ୍ରୀ ଡି. ଆର୍. ଗାଡଗିଲଙ୍କ ସହିତ ଏକ ସମୟରେ କେମ୍ବ୍ରିଜ ଆସିଥିଲେ । ଶ୍ରୀ ଡି. ଆର୍. ଗାଡ଼ଗିଲ୍, ଯେ କି ବର୍ତ୍ତମାନ ଯୋଜନା କମିଶନ୍‌ର ଉପାଧ୍ୟକ୍ଷ ଅଛନ୍ତି, ଶ୍ରୀ ବିକ୍ରମ ଦାସଙ୍କର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ଅନେକ ସମୟରେ ଆମର ଦେଖା ହେଉଥିଲା; କାରଣ ଶ୍ରୀ ଓ ଶ୍ରୀମତୀ ମରଚ୍ୟାଣ୍ଟ ଭାରି ମେଳାପି ଲୋକ ଥିଲେ ଓ ବହୁ ଟି' ଭୋଜି ଦେଉଥିଲେ । ଶ୍ରୀ ମରଚ୍ୟାଣ୍ଟ ଟ୍ରାଇପସ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଓକିଲାତି ପଢ଼ିଲେ । ସେ ବମ୍ବେ

ଫେରି ସେଠାରେ ଓକିଲାତି କଲେ । ମୁଁ ଭାରତକୁ ଫେରିଆସି କୌଣସି ଏକ ଶିକ୍ଷା ସମ୍ପର୍କୀୟ ବ୍ୟାପାରରେ ଯେତେବେଳେ ବମ୍ବେ ଯାଇଥିଲି, ତାଙ୍କ ଘରେ ରହିଥିଲି । ସେତେବେଳେ ସେ ତାଙ୍କର ମରଚ୍ୟାଣ୍ଟ ସାର୍ଟିଆକୁ ଉଠାଇ ଦେଇଥିଲେ । ଏବେ ସେ ଟି. ପୁରୁଷୋତ୍ତମ ଦାସ ନାମରେ ପରିଚିତ ଓ ଦିଲ୍ଲୀଠାରେ ଓକିଲାତି କରୁଛନ୍ତି । ସେ ବମ୍ବେରେ ଥିବାବେଳେ ପ୍ରଥମ ରହଣିର ଆଉ କେତେବର୍ଷ ପରେ ମୁଁ ପୁଣି ତାଙ୍କ ସହିତ ସାକ୍ଷାତ୍ କରିବାକୁ ଯାଇଥିଲି । ମୁଁ ପ୍ରଥମ ଶ୍ରୀମତୀ ପୁରୁଷୋତ୍ତମ ଦାସଙ୍କୁ ସେଠାରେ ଦେଖିଲି ନାହିଁ । ବୋଧହୁଏ ସେ ସେତେବେଳକୁ ଦ୍ୱିତୀୟଥର ବିବାହ କରିଗଲେଣି । ସେ ଦିନଠାରୁ ଆମ ଉଭୟଙ୍କ ମଧ୍ୟରେ ଦେଖା ସାକ୍ଷାତ୍ ହୋଇ ନାହିଁ । ଅବଶ୍ୟ ମୁଁ ତାଙ୍କର ରାଜନୈତିକ କାର୍ଯ୍ୟକଳାପର ଖବର ରଖେ ।

ଡକ୍ଟର ଡି. ଆର୍. ଗାଡ଼ଗିଲ୍‌ଙ୍କ ଘର ନାଗପୁରରେ । ଭାରତୀୟ ମଜଲିସ୍‌ରେ ସେ ସକ୍ରିୟ ଭାଗ ନେଉଥିଲେ ଏବଂ ଜଣେ ପ୍ରଥମ ଶ୍ରେଣୀର ଛାତ୍ର ଥିଲେ । ଭାରତକୁ ଫେରିଆସି ସେ କୌଣସି ଚାକିରି କରି ନ ଥିଲେ । ତାଙ୍କର ଶ୍ୱଶୁର ଅର୍ଥନୀତି ସମ୍ପର୍କୀୟ ଅଧ୍ୟୟନ ଓ ଗବେଷଣାପାଇଁ ଏକ ଅନୁଷ୍ଠାନ ଗଢ଼ିଥିଲେ । ଡକ୍ଟର ଗାଡ଼ଗିଲ୍ ସେହି ଅନୁଷ୍ଠାନରେ ଯୋଗ ଦେଇ ତା'ର ଡିରେକ୍ଟର ହୋଇଥିଲେ । ସେ ଜଣେ ପ୍ରମୁଖ ଅର୍ଥନୀତିଜ୍ଞ ଓ ବର୍ତ୍ତମାନ ଯୋଜନା କମିଶନ୍‌ର ଉପାଧ୍ୟକ୍ଷ । ମୁଁ ଯେତେବେଳେ ପୁନା ଯାଏ, ତାଙ୍କୁ ସାକ୍ଷାତ୍ କରେ । ଦିଲ୍ଲୀଠାରେ ମଧ୍ୟ ଆମର ଦେଖା ସାକ୍ଷାତ୍ ହୁଏ ।

ଜୀବନ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ଅନେକଙ୍କ ନାମ ମୋର ମନେପଡ଼ୁଛି ଓ ତାହା ଯେତେଦୂର ସମ୍ଭବ, ଉଲ୍ଲେଖ କରିବା ଉଚିତ ମନେକରୁଛି । ଶ୍ରୀ ପି. ଏ. ଦେଶାଇ ଉଦ୍ଭିଦ ବିଜ୍ଞାନ ସମେତ ପ୍ରକୃତି ବିଜ୍ଞାନରେ ଟ୍ରାଇପସ୍ ଲାଭ କରିଥିଲେ । ତାଙ୍କର ଟ୍ରାଇପସ୍ ପ୍ରଥମ ଭାଗ ପରେ ଆଇ. ସି. ଏସ୍. ପରୀକ୍ଷାପାଇଁ ତାଙ୍କର ଯଥେଷ୍ଟ ବୟସ ଥିଲା । ତେଣୁ ଭାରତ ଅଫିସକୁ ଆମେ ଏକ ଦରଖାସ୍ତ କଲୁ ଯେ, କୃଷି ସମ୍ପର୍କରେ ଅଧ୍ୟୟନ କରିବାପାଇଁ ତାଙ୍କୁ ଷ୍ଟାଇପେଣ୍ଡ ମିଳୁ । ସେ ଷ୍ଟାଇପେଣ୍ଡ ପାଇ କୃଷି ବିଷୟ ଅଧ୍ୟୟନ କଲେ । ଶେଷରେ ସେ ଆଇ. ସି. ଏସ୍. ହୋଇଥିଲେ । ଇଂଲଣ୍ଡରେ ଭାରତର ହାଇକମିଶନର୍ ଥିଲେ ଓ ତାଙ୍କର ଚାକିରି ସମୟ ଖୁବ୍ କୃତିତ୍ୱପୂର୍ଣ୍ଣ ଥିଲା । ଅବସର ଗ୍ରହଣ ପରେ ସେ କେତେଗୁଡ଼ିଏ ବ୍ୟବସାୟ ପ୍ରତିଷ୍ଠାନରେ ଯୋଗ ଦେଇ ସଫଳ ହୋଇଥିଲେ । ବର୍ତ୍ତମାନ ସେ ପାର୍ଲାମେଣ୍ଟରେ ସ୍ୱତନ୍ତ୍ର ଦଳ ପକ୍ଷରୁ ସଭ୍ୟ ଅଛନ୍ତି । ଆମର ଅନେକ ସମୟରେ ଦିଲ୍ଲୀରେ ଦେଖାହୁଏ ।

ଇନ୍ଦୋରରୁ ଆସିଥିବା ଅନ୍ୟ ଜଣେ ଯୁବକ ହେଲେ ଶ୍ରୀ ଏନ୍. ଏମ୍. ଦେଶମୁଖ। ସେ କିଛି କାଳପାଇଁ ମୋର ବସାଦରେ ରହୁଥିଲେ। ସେ ଭାରତର ମାଟ୍ରିକ୍ୟୁଲେସନ୍ ପରୀକ୍ଷା ସହିତ ସମାନ ପ୍ରିଭିୟସ୍ ପରୀକ୍ଷା ଦେଇଥିଲେ। ସେ ଜଣେ ବିଚକ୍ଷଣ କ୍ରିକେଟର୍ ଥିଲେ। ସେଠାରୁ ଡିଗ୍ରୀ ଲାଭ କରି ସେ ଓକିଲାତି ପଢିଲେ ଓ ଭାରତକୁ ଫେରି ନାଗ-ପୁରରେ ଓକିଲାତି କଲେ। ନାଗପୁରରେ ରହି ସେ ନାନା ପରିସରରେ ସାଧାରଣ କାର୍ଯ୍ୟରେ ମୁଖ୍ୟ ଭାଗ ଗ୍ରହଣ କରିଥିଲେ। ସେ ଏବେ ମଧ୍ୟ ସେହିଠାରେ କର୍ମରତ ଅଛନ୍ତି।

## ମୁଧୋଲକର

ତା'ପରେ ଜଷ୍ଟିସ ଜେ. ଆର୍. ମୁଧୋଲକରଙ୍କ ନାମ ମନେପଡ଼େ ଛୁ। ନିକଟରେ ଓଡ଼ିଶା ସମ୍ବାଦରେ ତାଙ୍କ ନାମ ଉଠିଚି। ଖୁବ୍ କମ୍ ବୟସରେ ସେ କେମ୍ବ୍ରିଜ ଆସିଥିଲେ। ତାଙ୍କର ଜନ୍ମ ବେରାର୍‌ର ଏକ ଜଣାଶୁଣା ପରିବାରରେ। ତାଙ୍କର ପିତା ଜଣେ ରାଜ-ନୈତିକ ନେତା ଥିଲେ। ମୋର ମନେପଡୁଛି, ମୁଁ ସ୍କୁଲରେ କିମ୍ବା କଲେଜରେ ପଢୁଥିବାବେଳେ ପୁରୀରେ ତାଙ୍କର ଭାଷଣ ଶୁଣିଛି। ଜେ. ଆର୍. ମୁଧୋଲକର ଓ ମୁଁ, କେମ୍ବ୍ରିଜବେଳରୁ ପରସ୍ପରର ବନ୍ଧୁ ହୋଇ ରହିଆସିଛୁ। ମୁଁ ୧୯୨୧ ମସିହାରେ ଭାରତକୁ ଫେରିଆସିବାବେଳେ ସେ କେମ୍ବ୍ରିଜରେ ଥିଲେ। ଭାରତକୁ ଫେରିଆସି ସେ ନାଗପୁରରେ ଓକିଲାତି କଲେ। ପ୍ରଥମେ ନାଗପୁର ହାଇକୋର୍ଟ ଓ ପରେ ସୁପ୍ରିମ-କୋର୍ଟର ବିଚାରପତି ରୂପରେ ସେ ନିଯୁକ୍ତ ହୋଇଥିଲେ। ଯେତେବେଳେ ସୁବିଧା ମିଳେ, ଆମେ ପରସ୍ପର ସହିତ ସାକ୍ଷାତ୍ କରୁ। ୧୯୬୬ ମସିହାରେ ସେ ଓଡ଼ିଶା ଆସିଥିବାବେଳେ ମୋ ପାଖକୁ ଆସିଥିଲେ ଓ ଅଧଘଣ୍ଟା ପର୍ଯ୍ୟନ୍ତ ଆମେ ସେହି ପୁରୁଣା ଦିନର ଏବଂ ପୁରୁଣା ବନ୍ଧୁମାନଙ୍କ ସମ୍ପର୍କରେ ମଧୁର ଆଲାପ କରିଥିଲୁ।

ଅନ୍ୟାନ୍ୟ ବନ୍ଧୁଙ୍କ ନାମ ମୋର ମନେପଡୁଛି। କିନ୍ତୁ ସମସ୍ତଙ୍କ ବିଷୟରେ ଲେଖିବାକୁ ଯାଇ ଏହି ଲେଖାଟିକୁ ମୁଁ ଭାରାକ୍ରାନ୍ତ କରିବାକୁ ଚାହେଁ ନାହିଁ। ଭାରତୀୟ ସିଭିଲ୍ ସର୍ଭିସ୍‌ର ଜଣେ ବିଶିଷ୍ଟ ସଭ୍ୟ ଶ୍ରୀ ଏ. ଏନ୍ ସାହା ଙ୍କ ସମ୍ପର୍କରେ ଅବଶ୍ୟ କିଛି ଆଲୋଚନା ନ କରି ମୁଁ ରହିପାରୁ ନାହିଁ। ମୁଁ ଭାରତକୁ ଫେରି ଯେତେବେଳେ ନିଖିଳ କଂଗ୍ରେସ ଅଧିବେଶନରେ ଯୋଗଦେବାପାଇଁ ନାଗପୁର ଗଲି; ଶ୍ରୀ ସାହା ବେରାର୍‌ର ସେକ୍ରେ-ଟେରିଏଟରେ କାମ କରୁଥିଲେ। ମୁଁ ତାଙ୍କୁ ସାକ୍ଷାତ କରିବାପାଇଁ ଅମରାବତୀ ଗଲି। ସେ ତାଙ୍କ ଗାଡିରେ ମୋତେ ଓ୍ୱାର୍ଦ୍ଧା ନେଇଗଲେ, ସେଠାରେ ଆଶ୍ରମ ପରିଦର୍ଶନ କରିବାପାଇଁ।

ପରେ ଆମେ ବିଭିନ୍ନ ସ୍ଥାନରେ ଦେଖା ସାକ୍ଷାତ୍‌ର ସୁଯୋଗ ପାଇଛୁ । ତାଙ୍କର କୌଣସି ସାମାଜିକ ରକ୍ଷଣଶୀଳତା ନ ଥିଲା । କାରଣ ତାହା ଥିଲେ ସେ ତାଙ୍କର କନ୍ୟାକୁ ସୁପ୍ରିମ-କୋର୍ଟର ପ୍ରଧାନ ବିଚାରପତି ଜଷ୍ଟିସ୍ ହିଦାୟତୁଲ୍ଲାଙ୍କ ସହିତ ବିବାହ ଦେଇ ନ ଥାନ୍ତେ । ସମୟ ସମୟରେ ଦିଲ୍ଲୀରେ ଆମର ସାକ୍ଷାତ୍ ହୁଏ । ୧୯୬୭ ମସିହାରେ ମୁଁ ବମ୍ବେ ଯାଇଥିବାବେଳେ ସେଠାରେ ତାଙ୍କ ସହିତ ମୋର ଶେଷଥରପାଇଁ ଦେଖା ହୋଇଥିଲା । ସେଠାରେ ସେ କେତେକ ପୁରାତନ ବନ୍ଧୁଙ୍କୁ ନିମନ୍ତ୍ରଣ କରିଥିଲେ । ଏମାନେ ହେଲେ—ସର୍ବଶ୍ରୀ ଏମ୍. ଡି. ଭଟ୍ଟ, ଆଇ. ସି. ଏସ୍. ବମ୍ବେର ଅବସରପ୍ରାପ୍ତ ଚିଫ୍ ସେକ୍ରେଟେରି କେ. ଭି. ଯୋଶୀ, ରିଜର୍ଭ ବ୍ୟାଙ୍କର ଅବସରପ୍ରାପ୍ତ ଡେପୁଟି ଗଭର୍ଣ୍ଣର, କେ. ଆର୍. ଗୁଞ୍ଜିକର, ବମ୍ବେ ଏଲ୍‌ଫିନ୍‌ଷ୍ଟୋନ୍ କଲେଜର ଅବସରପ୍ରାପ୍ତ ପ୍ରିନ୍‌ସିପାଲ, କେ. ସି. ମେହେଠା, ଆସାମର ଅବସରପ୍ରାପ୍ତ ପୋଷ୍ଟମାଷ୍ଟର୍ ଜେନେରାଲ ଏବଂ ଆଉ କେତେଜଣ କେମ୍ବ୍ରିଜ ବନ୍ଧୁ । ସମସ୍ତଙ୍କୁ ସେ ନୈଶ୍ୟଭୋଜନକୁ ଡାକିଥିଲେ ।

ମୁଁ ପୂର୍ବରୁ ଉଲ୍ଲେଖ କରିଛି ଯେ କେମ୍ବ୍ରିଜରେ ମୋର ରହଣିକାଳ ମଧ୍ୟରେ ଭାରତର ବହୁ ବିଶିଷ୍ଟ ଜନନେତାଙ୍କ ସହିତ ମିଶିଛି । ସେମାନଙ୍କ ବ୍ୟତୀତ ବହୁ ବିଶିଷ୍ଟ ଭାରତୀୟ ବୈଜ୍ଞାନିକ କେମ୍ବ୍ରିଜ ଆସିଥିବାବେଳେ ତାଙ୍କ ସହିତ ଆମର ସାକ୍ଷାତ୍ ହୋଇଛି । ଆଚାର୍ଯ୍ୟ ଜଗଦୀଶଚନ୍ଦ୍ର ଓ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ରଙ୍କ ସମ୍ପର୍କରେ ମୁଁ ପୂର୍ବରୁ ଉଲ୍ଲେଖ କରିଛି । ଆଉ ଦୁଇଜଣ ବିଶିଷ୍ଟ ଭାରତୀୟ ଡକ୍ଟର ଡି. ଏମ୍. ବୋଷ ଓ ଡକ୍ଟର ଏସ୍. ପି. ଅଘରକରଙ୍କ ସହିତ ମଧ୍ୟ ମୋର ସାକ୍ଷାତ ହୋଇଥିଲା । ସେମାନେ ଜର୍ମାନୀରେ ସେମାନଙ୍କ ପାଠ ଶେଷ କରିସାରିଥିଲେ । ଡକ୍ଟର ଡି. ଏମ୍. ବୋଷ ପଦାର୍ଥବିଜ୍ଞାନ କ୍ଷେତ୍ରରେ ଜଣେ ସ୍ୱନାମଧନ୍ୟ ବୈଜ୍ଞାନିକ । ଭାରତକୁ ଫେରି ସେ ବୋଷ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍‌ରେ ଯୋଗ ଦେଇ ଶେଷରେ ତା'ର ଡିରେକ୍ଟର ଭାବରେ ଅବସର ଗ୍ରହଣ କରିଅଛନ୍ତି । ସେ ଆଚାର୍ଯ୍ୟ ଜଗଦୀଶଚନ୍ଦ୍ରଙ୍କର ପୁତୁରା । ଭାରତୀୟ ବିଜ୍ଞାନ କଂଗ୍ରେସର ଥରେ ସେ ସାଧାରଣ ସଭାପତି ହୋଇଥିଲେ । ଜଣେ ବନ୍ଧୁଙ୍କ ଗୃହରେ କେମ୍ବ୍ରିଜଠାରେ ଆମର ସାକ୍ଷାତ୍ ସମୟରେ ଭାରତୀୟ ସମସ୍ୟା ସମ୍ପର୍କରେ ଆମେ ଆଲୋଚନା କରିଥିଲୁ । ସେତେବେଳେ ରାଜନୈତିକ ଚିନ୍ତା ଦୃଷ୍ଟିରୁ ମୋତେ ଜଣେ ଚରମପନ୍ଥୀ ବୋଲି ମନେ କରାଯାଉଥିଲା । ଏବେ ଦେଖାହେଲେ ମଧ୍ୟ ଡକ୍ଟର ବୋଷ ସେ'କଥା କହନ୍ତି । ମୁଁ ଭାରତକୁ ଫେରିଆସିଲା ପରେ ଆମର ବହୁବାର ଦେଖା ସାକ୍ଷାତ୍ ହୋଇଛି । ବିଶେଷତଃ ମୁଁ କଲିକତାର ବୋଷ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍‌ର କାଉନସିଲର ସଦସ୍ୟ ଭାବରେ ମନୋନୀତ ହେବା ପରେ ।

ଡକ୍ଟର ଏସ୍. ପି. ଅଘରକର ଜଣେ ଉଦ୍ଭିଦତତ୍ତ୍ୱବିତ୍ ଥିଲେ । ଜର୍ମାନୀ ଯିବା ପୂର୍ବରୁ ସାର୍ ଆଶୁତୋଷ ତାଙ୍କୁ କଲିକତା ବିଶ୍ୱବିଦ୍ୟାଳୟର ଉଦ୍ଭିଦ ବିଜ୍ଞାନ ଅଧ୍ୟାପକ ରୂପେ ବାଛିଥିଲେ । ଜଣେ ବନ୍ଧୁଙ୍କ ଗୃହରେ କେମ୍ବ୍ରିଜଠାରେ ଆମର ସାକ୍ଷାତ୍ ହୋଇଥିଲା ଓ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ସହିତ ବନ୍ଧୁତା ରହିଥିଲା । ଆମ ଉଭୟଙ୍କର ଉଦ୍ଭିଦ ବିଜ୍ଞାନରେ ଆଗ୍ରହ ଥିବାଯୋଗୁଁ ବହୁ ଘଟଣାରେ ଆମେ ଏକାଠି ହୋଇଛୁ । ବହୁ ବର୍ଷ ଧରି ସେ ବିଜ୍ଞାନ କଂଗ୍ରେସର ସାଧାରଣ ସମ୍ପାଦକ ଥିଲେ । କଲିକତା ବିଶ୍ୱବିଦ୍ୟାଳୟରୁ ଅବସର ଗ୍ରହଣକରି ପୁନାଠାରେ ସେ ଏକ ଗବେଷଣାଗାର ପ୍ରତିଷ୍ଠା କରିଥିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କ ନାମାନୁସାରେ ଏହାର ନାମକରଣ କରାଯାଇଛି ।



# କେମ୍ବ୍ରିଜ ଓ ରେଭେନ୍‌ସା କଲେଜ

ଏବେ ପୁଣି କେମ୍ବ୍ରିଜରେ ମୋର ଛାତ୍ରଜୀବନ କଥା କହେଁ । ଟ୍ରାଇପସ୍ ପରୀକ୍ଷାର କଥା ମୁଁ ପୂର୍ବରୁ ଉଲ୍ଲେଖ କରିଛି ଓ ସେଥିସହିତ ଉଦ୍ଭିଦ ଶରୀରତତ୍ତ୍ୱ ବିଷୟରେ ଗବେଷଣା କରିବାପାଇଁ ଫ୍ରାଙ୍କ୍ ସ୍ମାର୍ଟ ଛାତ୍ରବୃତ୍ତି ମୋତେ ମିଳିଥିବା କଥା ମଧ୍ୟ କହିଅଛି । ବିଖ୍ୟାତ ଉଦ୍ଭିଦ ଶରୀରତତ୍ତ୍ୱବିଦ୍ ଡକ୍ଟର ଏଫ୍. ଏଫ୍. ବ୍ଲାକ୍‌ମ୍ୟାନ୍‌ଙ୍କ ତତ୍ତ୍ୱାବଧାନରେ ମୁଁ ଗବେଷଣା ଆରମ୍ଭ କଲି । ବଶୁଙ୍କ ଅମ୍ଳଜାନଠାରୁ ଆରମ୍ଭ କରି ଅମ୍ଳଜାନ ଆସ୍ତେ ଆସ୍ତେ କମାଇ ବିନା ଅମ୍ଳଜାନରେ ମଧ୍ୟ ଚେଖ୍ଗ୍ନରେଲ ନାମକ ଏକ ଜାତୀୟ ପତ୍ରର ଶ୍ୱାସପ୍ରକ୍ରିୟା ଥିଲି ମୋର ବିଶେଷ ଅଧ୍ୟୟନର ବିଷୟ । ଏଥିରୁ କେତେକ ଉପାଦେୟ ତଥ୍ୟ ବାହାରିଲା । ୧୯୬୭ ମସିହାରେ ମୁଁ ଯେତେବେଳେ ଦ୍ୱିତୀୟଥର କେମ୍ବ୍ରିଜ ଆସିଲି ସେ ବିଷୟ ବର୍ଣ୍ଣନା କରିବାକୁ ଯିବାବେଳେ ପୁଣି ମୁଁ ଏ ସମ୍ପର୍କରେ ଆଲୋଚନା କରିବି । ଫ୍ରାଙ୍କ୍ ସ୍ମାର୍ଟ ଛାତ୍ରବୃତ୍ତିର ସମୟ ଶେଷ ହୋଇଯିବା ପରେ ପତ୍ରମାନଙ୍କର ଶ୍ୱାସ ପ୍ରକ୍ରିୟା ସମ୍ପର୍କୀୟ ମୋର ଅଧ୍ୟୟନଲବ୍ଧ ତଥ୍ୟକୁ ବିସ୍ତୃତକୁ ନେଇ ଡକ୍ଟର ବ୍ଲାକ୍‌ମ୍ୟାନ୍ ମୋତେ ଆଉ କିଛି ସମୟ କେମ୍ବ୍ରିଜରେ ରହିବାପାଇଁ ଅନୁରୋଧ କଲେ ଓ ସେଉପଲକ୍ଷେ ସାଇତି ରଖିଲେ ତା'ର ଶ୍ୱାସପ୍ରକ୍ରିୟା କ'ଣ ହେବ ସେ ସମ୍ପର୍କରେ ଅଧ୍ୟୟନ କରିବାପାଇଁ କହିଲେ ।

ପ୍ରଥମ ମହାଯୁଦ୍ଧ ସମୟରେ ଜର୍ମାନୀର ଅବରୋଧ ଯୋଗୁ ଗ୍ରେଟ୍‌ବ୍ରିଟେନରେ ଖାଦ୍ୟାଭାବ ଘଟିଥାଏ । ସେଥିପାଇଁ ସରକାର ଏକ ଖାଦ୍ୟାନୁସନ୍ଧାନ ବୋର୍ଡ ଗଠନ କରିଥାନ୍ତି । ଉଦ୍ଦେଶ୍ୟ ହେଲା, ଖାଦ୍ୟ ଉତ୍ପାଦନ ହେବାର ଉପାୟ ଚିନ୍ତା କରିବା ଓ ଯାହା ଖାଦ୍ୟ ଉତ୍ପନ୍ନ ହେଉଛି ତାହାକୁ ଭଲ ଭାବରେ ସଞ୍ଚୟ କରିବାର ବାଟ ବାହାର କରିବା ।

ଏହି ଖାଦ୍ୟାନୁସନ୍ଧାନ ବୋର୍ଡର ମାର୍ଫତରେ ଓ ଡକ୍ଟର ବ୍ଲାକ୍‌ମ୍ୟାନ୍‌ଙ୍କ ତତ୍ତ୍ୱାବଧାନରେ ସେଉ ସବୁ କିପରି ସଞ୍ଚିତ ହୋଇ ରହିବ ସେ ସମ୍ପର୍କରେ ଗୁଡ଼ିଏ ଗବେଷକ ନିଯୁକ୍ତ ଥାଆନ୍ତି । ଏମାନେ ହେଲେ ଡକ୍ଟର ଫ୍ରାଙ୍କ୍‌ଲିନ୍ କିଡ୍, ଡକ୍ଟର

ଓ୍ୱେଷ୍ଟ ଓ ଶ୍ରୀ ବ୍ରୁଗ୍ସ । ଏହି ଦଳରେ ଯୋଗ ଦେବାପାଇଁ ମୋତେ ଅନୁରୋଧ କରାଗଲା । ଏହାର କାମ ଥିଲା, ଅମ୍ଳଜାନର ବିଭିନ୍ନ ଅନୁପାତରେ ସେଓର ଶ୍ୱାସ-ପ୍ରକ୍ରିୟା ଅଧ୍ୟୟନ କରିବା, ଯେପରିକି ଅମ୍ଳଜାନର ନିର୍ଦ୍ଦିଷ୍ଟ ଆନୁପାତିକ ପରିମାଣ ବାହାର କରାଯାଇ ସେଓକୁ ଭଲ ଅବସ୍ଥାରେ ବହୁଦିନ ଧରି ସାଇତି ରଖାଯାଇ ପାରିବ । ମୁଁ ବିହାର-ଓଡ଼ିଶାର ସରକାରୀ ଛାତ୍ରବୃତ୍ତିଧାରୀ ହୋଇଥିବାଯୋଗୁ ଫ୍ରାଙ୍କ୍ ସ୍ମାର୍ଟ ବୃତ୍ତିଧାରୀ ଭାବରେ ରହିବାକୁ ହେଲେ ଏମାନଙ୍କର ଅନୁମତି ଲୋଡ଼ା ହୋଇଥିଲା । ଗ୍ରେଟ୍ବ୍ରିଟେନ୍ ସରକାରଙ୍କର ଖାଦ୍ୟାନୁସନ୍ଧାନ ବୋର୍ଡର ଜଣେ ଗବେଷକ ଭାବରେ ମୁଁ ନିଯୁକ୍ତ ହେଉଥିବାଯୋଗୁ ମୋତେ ବିହାର-ଓଡ଼ିଶା ସରକାରଙ୍କର ଅନୁମତି ମଧ୍ୟ ଆଣିବାକୁ ପଡ଼ିଥିଲା । ବିହାର-ଓଡ଼ିଶା ସରକାରଙ୍କର ଅନୁମତି ପାଇବାରେ ବିଳମ୍ବ ହେଲା ନାହିଁ । ଇଂରେଜ ଗବେଷକମାନଙ୍କୁ ବର୍ଷକୁ ୨୦୦ ପାଉଣ୍ଡ ମିଳୁଥିବାବେଳେ ମୋତେ ୩୦୦ ପାଉଣ୍ଡ ମିଳିଲା । ତା'ର କାରଣ ହେଉଛି, ଇଂରେଜମାନେ ଭାରତରେ ଯେପରି ସମୁଦ୍ରପାରି ଭତ୍ତା ନିୟମ ଅନୁଯାୟୀ ଅଧିକ ଦରମା ପାଉଥିଲେ ମୁଁ ମଧ୍ୟ ସେଠାରେ ସେହି ନିୟମ ଅନୁସାରେ ଅଧିକ ଭତ୍ତା ପାଇଲି । ମୁଁ ବର୍ଷେ କାମ କରି ଦେଖିଲି ଯେ ସେଓ ଫଳକୁ ବେଶିଦିନ ଭଲ ଅବସ୍ଥାରେ ରଖିବାକୁ ହେଲେ ପ ଅଭାଗ ଅମ୍ଳଜାନ ସମାହାର ଆବଶ୍ୟକ । ଯେତେ-ବେଳେ ମୋର ବର୍ଷକର କାର୍ଯ୍ୟକାଳ ପୂରିଗଲା, ମୋତେ ଆଉ ବର୍ଷେ ରହିବାପାଇଁ ଡକ୍ଟର ବ୍ଲାକ୍ମ୍ୟାନ୍ ଇଚ୍ଛା ପ୍ରକାଶ କଲେ । କିନ୍ତୁ ସେତେବେଳକୁ ମୋତେ ନିଜ ଘର ଓ ଗାଁଗଣ୍ଡା କଥା ଏତେ ମନେପଡ଼ିଲା ଯେ ମୁଁ ଭାରତକୁ ଚାଲି ଆସିବାପାଇଁ ଚାହିଁଲି । ଡକ୍ଟର ବ୍ଲାକ୍ମ୍ୟାନ୍ ଏଥିରେ ସମ୍ମତ ହେଲେ । ମୁଁ ୧୯୨୧ ଜୁଲାଇ ମାସରେ କେମ୍ବ୍ରିଜ ଛାଡ଼ିଲି ଓ ଇଂଲିଶ ଚ୍ୟାନେଲ ପାରିହୋଇ ପ୍ୟାରିସ୍ ଅଭିମୁଖେ ଯାତ୍ରା କଲି । ଶ୍ରୀ ଓ ଶ୍ରୀମତୀ ପୁରୁଷୋତ୍ତମ ଦାସ (ସେତେବେଳେ ତାଙ୍କର ସାଙ୍ଗିଆ ମରଚ୍ୟାଣ୍ଟ୍ ଥିଲା) ଓ ଡକ୍ଟର ଡି. ଆର୍. ଗାଡ଼ଗିଲ୍ ପ୍ୟାରିସ୍ରେ ତାଙ୍କର ଛୁଟି ସମୟ କଟାଉଥିଲେ । ମୁଁ କିଛିଦିନ ସେମାନଙ୍କ ସହିତ ରହିଲି ଓ ତା'ପରେ ମାର୍-ସେଲେସ୍ ଯାଇ ପି ଆଣ୍ଡ୍ ଓ କମ୍ପାନୀର ମାଲ୍ଓ୍ୱା ନାମକ ଜାହାଜ ଚଢ଼ି ବମ୍ବେ ଅଭିମୁଖେ ଯାତ୍ରା କଲି । ଇତ୍ୟବସରରେ ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆଙ୍କ ପକ୍ଷରୁ ଇଣ୍ଡିଆନ୍ ଏଡୁକେସନ ସର୍ଭିସ୍ରେ ମୁଁ ନିଯୁକ୍ତି ପାଇ ସର୍ଭିସ୍ ଚୁକ୍ତିନାମାରେ ଦସ୍ତଖତ କରି ସାରିଥିଲି । ମୁଁ ପୂର୍ବରୁ ଉଲ୍ଲେଖ କରିଛି ଯେ ଆଇ. ଇ. ଏସ୍.ରେ ଉତ୍ତର ପ୍ରଦେଶରେ ଯୋଗ ଦେବାପାଇଁ ମୋତେ ଡକରା ଆସିଥିଲା । କିନ୍ତୁ

ବିହାର-ଓଡ଼ିଶା ସରକାରଙ୍କ ସହିତ ବିହାର-ଓଡ଼ିଶାରେ ପାଞ୍ଚବର୍ଷ ଚାକିରି କରିବା-ପାଇଁ ମୋର ପୂର୍ବରୁ ଚୁକ୍ତି ହୋଇଥିବାଯୋଗୁଁ ବିହାର-ଓଡ଼ିଶା ସରକାର ମୁ. ପି ଯିବାପାଇଁ ମୋତେ ଅନୁମତି ଦେଲେ ନାହିଁ ।

ଜୁଲାଇ ମାସ ଶେଷଆଡ଼କୁ ମୁଁ ବମ୍ବେରେ ପହଞ୍ଚିଲି । ସେତେବେଳେ ଶ୍ରୀ ଭୁବନାନନ୍ଦ ଦାସ ବମ୍ବେରେ ରହୁଥିଲେ । ମୁଁ ତାଙ୍କ ସହିତ କିଛିଦିନ କଟାଇଲି । ସେଠାରେ ଡକ୍ଟର ହରେକୃଷ୍ଣ ମହତାବ ଓ ମୋର ପୂର୍ବତନ ସ୍କୁଲ ସମୟର ବନ୍ଧୁ ଭାଗୀରଥି ମହାପାତ୍ରଙ୍କ ସହିତ ଦେଖା ହେଲା । ବମ୍ବେରେ ଦିନେ ଦୁଇ ଦିନ ରହିବା ପରେ ମୁଁ କଟକ ଅଭିମୁଖେ ଯାତ୍ରା କଲି । ଗାଡ଼ି ମହାନଦୀ ପୋଲ ପାଖରେ ପହଞ୍ଚିବା ବେଳେ ମୁଁ ହଠାତ୍ ବିଚଳିତ ହୋଇ କାନ୍ଦିବାକୁ ଆରମ୍ଭ କଲି । କାରଣ କହିବା କଷ୍ଟକର । ମୋର ପିତାମାତା ଓ ଭଉଣୀ ସେତେବେଳକୁ କେହି ନ ଥିଲେ । ସମ୍ପର୍କୀୟ ବୋଲି ଯେଉଁମାନେ ଥିଲେ ସେମାନେ ମୋ ବାପାଙ୍କର ଦାଦିପୁଅ ଭାଇ ଥିଲେ । ତେଣୁ ମୋର ପରିବାରକୁ ଫେରିଆସୁଥିବା ଯୋଗୁଁ ଯେ ମୁଁ ଏପରି ବିଚଳିତ ହେଲି, ତାହା କେବେ କାରଣ ହୋଇ ନ ପାରେ । କାରଣ ହେଉଛି, ମୁଁ ମୋର ଜନ୍ମଭୂମିକୁ ଫେରିଆସିଛି ।

କଟକରେ ଅଳ୍ପ ସମୟ ରହି ମୁଁ ମୋର ଗାଁକୁ ଗଲି । ମୁଁ ବିଲାତରେ ଥିବାବେଳେ, ମୋର ବାଲ୍ୟକାଳ ଯେଉଁ ଗୃହରେ କଟିଥିଲା ତାହା ପୋଡ଼ି ଯାଇଥିଲା । ମୁଁ ଯାଇ ମୋ ବାପାଙ୍କର ଖୁଡ଼ୁତୁତା ପୁଅ ଭାଇମାନଙ୍କ ଘରେ ରହିଲି । ସେମାନଙ୍କର ଇଚ୍ଛାକୁ ପୂର୍ଣ୍ଣ କରିବାକୁ ଯାଇ ମୋତେ କେତେକ ବିଧିବିଧାନ ମାନିବାକୁ ହୋଇଥିଲା । ମୁଁ ଦେଶାନ୍ତରରେ ଥିବାଯୋଗୁ ଅପବିତ୍ର ହୋଇଯାଇଛି, ତେଣୁ ଏ ସବୁ ବିଧିବିଧାନ । ସେତେବେଳେ ଏସବୁ ଧାରଣା ଏକ ସାଧାରଣ ବିଷୟ ଥିଲା, କିନ୍ତୁ ଅଳ୍ପ କାଳପରେ ତାହା ଆଉ ରହିଲା ନାହିଁ । ୧୯୨୬ ମସିହାରେ ମୁଁ ଯେତେବେଳେ ଦ୍ୱିତୀୟ ବାର ଇଂଲଣ୍ଡ ଗଲି କେହି ଆଉ ଏପରି ଆପତ୍ତି ଉଠାଇଲେ ନାହିଁ ।

୧୯୨୧ ମସିହା ଅଗଷ୍ଟ ୪ ତାରିଖ ଦିନ ମୁଁ ସର୍ଭିସ୍‌ରେ ଯୋଗ ଦେଲି । କିଛି ଦିନ ମୁଁ ସ୍ୱାମୀଜୀ (ଶ୍ରୀ ଭୁବନାନନ୍ଦ ଦାସଙ୍କ ଭାଇ ସ୍ୱାମୀ ବିଚିତ୍ରାନନ୍ଦ ଦାସ)ଙ୍କ ସହିତ ରହିଲି । ତା'ପରେ ମୁଁ କଲେଜକୁ ଚାଲିଆସି ଶ୍ରୀ ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କ ସଙ୍ଗରେ ରହିଲି । ରେଭେନ୍‌ସା କଲେଜ, ରାଣୀହାଟ ନିକଟବର୍ତ୍ତୀ ଚାନ୍ଦି ପଡ଼ିଆ (ପୁରୁଣା ଘୋଡ଼ାଦୌଡ଼ ପଡ଼ିଆ)ରେ ହୋଇଥିବା ନୂଆ କୋଠା ଘରକୁ ଚାଲି

ଯାଇଥିଲା । ସେତେବେଳେ କଲେଜ କୋଠାଘର ଗୋଟିକିଆ ହୋଇ ରହୁଥିଲା । କାରଣ ତା’ ପାଖରେ କୌଣସି ବଜାର ନ ଥିଲା କିମ୍ବା ଲୋକେ ବେଶି ରହୁ ନ ଥିଲେ । କେବଳ ରେଲଷ୍ଟେସନଟା ନିକଟରେ ଥିଲା ।

କଲେଜରେ ଇଣ୍ଡିଆନ୍ ଏଡୁକେସନ୍ ସର୍ଭିସ୍‌ର ବହୁ ବ୍ୟକ୍ତି ଥିଲେ । ଶ୍ରୀ ଏଚ୍. ଲାମ୍ବର୍ଟ, ପ୍ରିନ୍‌ସିପାଲ୍ ଥିଲେ, ଶ୍ରୀ ଉଷ୍ଟନ୍ ସ୍ମିଥ୍ ଇତିହାସ ଅଧ୍ୟାପକ ଓ ଶ୍ରୀ ହ୍ୱାଇଟ୍‌ଲକ୍ ଇଂରେଜୀ ବିଭାଗର ଅଧ୍ୟକ୍ଷ ଥିଲେ । ତାଙ୍କର ବାବା କର୍ତ୍ତାର ସିଂ ପାଟନାରୁ ବଦଳି ହୋଇ ଆସି ରସାୟନ ବିଭାଗର ଅଧ୍ୟାପକ ହୋଇଥିଲେ । ଶ୍ରୀ ତ୍ରିପାଠୀ ଓ ମୁଁ ଇଣ୍ଡିଆନ୍ ଏଡୁକେସନ୍ ସର୍ଭିସ୍‌ର ଦୁଇ ଜଣ ସ୍ଥାନୀୟ ବ୍ୟକ୍ତି ହୋଇଥିବାଯୋଗୁଁ ଆମେ ଦୁଇ ହଷ୍ଟେଲର ଓ୍ୱାର୍ଡେନ୍ ନିଯୁକ୍ତ ହୋଇଥିଲୁ । ଶ୍ରୀ ତ୍ରିପାଠୀ ଇଷ୍ଟ ହଷ୍ଟେଲ ଓ ମୁଁ ଓ୍ୱେଷ୍ଟ ହଷ୍ଟେଲ୍‌ର ଓ୍ୱାର୍ଡେନ ହୋଇଥିଲୁ । ଓ୍ୱେଷ୍ଟ୍ ହଷ୍ଟେଲ୍ ନିର୍ମାଣ ଶେଷ ହେବାପରେ ମୁଁ ଓ୍ୱାର୍ଡେନ୍ କ୍ୱାର୍ଟର୍ସକୁ ଚାଲି ଆସିଲି ।

ସେତେବେଳର ପ୍ରଚଳିତ ରୀତି ଥିଲା ଯେ, ଅଖିଳ ଭାରତୀୟ ସର୍ଭିସ୍‌ରେ କେହି ନୂଆ ହୋଇ ପ୍ରବେଶ କଲେ, ସେହି ସର୍ଭିସ୍‌ର ଅନ୍ୟ ପୁରାତନ ସଭ୍ୟମାନଙ୍କୁ ସେମାନଙ୍କ ଗୃହରେ ସାକ୍ଷାତ କରିବାର କଥା । ଜାତୀୟ ଚେତନାରେ ଅନୁପ୍ରାଣିତ-ହୋଇ ମୁଁ ଅଫିସର୍‌ମାନଙ୍କ ଘରେ ଯାଇ ସାକ୍ଷାତ୍ କରିବାର ବିରୋଧୀ ଥିଲି । କିନ୍ତୁ ଶ୍ରୀ ତ୍ରିପାଠୀ ମୋତେ ପ୍ରବର୍ତ୍ତାଇବାରୁ ମୁଁ ତାଙ୍କ ସହିତ କାଣ୍ଟନ୍‌ମେଣ୍ଟ ରୋଡ୍‌କୁ ଗଲି । ପାଞ୍ଚ ନମ୍ବର କାଣ୍ଟନ୍‌ମେଣ୍ଟ ରୋଡରେ ସେତେବେଳେ ଜଣେ ଅଫିସର୍ ରହୁଥିଲେ । ଆମେ ତାଙ୍କ ହତାରେ ପଶିଲାକ୍ଷଣି ଦେଖିଲୁ ଯେ ଅଫିସର୍ ଜଣକ ବାରଣ୍ଡାରେ ବସିଛନ୍ତି କିନ୍ତୁ ବେହେରା ଆସି ଆମକୁ କହିଲା, ସାହେବ ଦେଖା କରିପାରିବେ ନାହିଁ । ଆମେ ଚାଲି ଆସିଲୁ । କିନ୍ତୁ ଏହି ଗୋଟିକ ଘଟଣା ମୋ ପକ୍ଷରେ ଯଥେଷ୍ଟ ହୋଇ-ଗଲା । ଏଣିକି ମୁଁ ଅଫିସର୍‌ମାନଙ୍କ ଘରେ ଯାଇ ଦେଖା କରିବା ବନ୍ଦ କରିଦେଲି । ଅଫିସରେ ଶ୍ରୀ ଲାମ୍ବର୍ଟଙ୍କ ସହିତ ମୁଁ ସାକ୍ଷାତ୍ କଲେ ମଧ୍ୟ ସାମାଜିକ ଆଦବ୍ କାୟଦା ଦୃଷ୍ଟିରୁ ତାଙ୍କୁ ବଙ୍ଗଳାରେ ଯାଇ ସାକ୍ଷାତ୍ କରି ନ ଥିଲି । ଅବଶ୍ୟ ସେ ମୋତେ ପରେ ତାଙ୍କ ଘରକୁ ନିମନ୍ତ୍ରଣ କରିଥିଲେ । ଏସବୁ ବିଷୟରେ ମୋର ମତ ଶ୍ରୀ ତ୍ରିପାଠୀଙ୍କଠାରୁ ଭିନ୍ନ ଥିଲା । ବାସ୍ତବିକ ଓ୍ୱେଷ୍ଟ ହଷ୍ଟେଲ୍ ଓ୍ୱାର୍ଡେନ କ୍ୱାର୍ଟର୍ସରେ ମୁଁ ଯେବେ ଯାଇ ରହିଲି ସେତେବେଳେ ସେଠାରେ ଭାରତୀୟ ବ୍ୟବସ୍ଥା ପ୍ରବର୍ତ୍ତନ କଲି ଓ ଭାରତୀୟ ଖାଦ୍ୟ ଖାଇଲି । ମୁଁ ଘରେ ଧୋତି ପିନ୍ଧୁଥିଲି ଓ ଶ୍ରୀ ଗୋପବନ୍ଧୁ

ଚୌଧୁରୀ କମ୍ବା ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କପରି ପୁରାତନ ବନ୍ଧୁଙ୍କ ସହ ସାକ୍ଷାତ୍ କରି- ବାକୁ ଯିବାବେଳେ ଧୋତି ଓ ପଞ୍ଜାବୀ ପିନ୍ଧି ଯାଉଥିଲି । ଯେତେବେଳେ ଶ୍ରୀ ଏସ୍. ଆର. ୟୁ. ଜମାନ୍, ଆଇ.ସି.ଏସ୍ କଟକରେ ମୁକରିର ହେଲେ, ସେ ଆସି ମୋ ସହିତ ରହିଲେ । କାରଣ ୧୯୧୦ ମସିହାରେ ଆମେ ଦୁଇ ଜଣଯାକ ବିହାର-ଓଡ଼ିଶା ବୃତ୍ତିଧାରୀ ଭାବରେ ଏକାଠି ବିଲାତ ଯାଇଥିଲୁ । ବିଲାତରେ ଦୀର୍ଘକାଳ ରହିବା ପରେ ଭାରତୀୟ ଢଙ୍ଗରେ ଚଳିବାଯୋଗୁଁ ମୁଁ ଗୁରୁ ଓ ଭାରତୀୟ ସହକର୍ମୀମାନଙ୍କ ମଧ୍ୟରେ ଖୁବ୍ ପ୍ରିୟ ହୋଇପାରିଥିଲି । କିନ୍ତୁ ୟୁରୋପୀୟ ଢାଞ୍ଚାରେ ଚଳୁଥିବା ମୋର ସହକର୍ମୀମାନଙ୍କଠାରୁ ନିଶ୍ଚୟ ଦୂରେଇଯାଇଛି, ଯଦିଓ ୟୁରୋପୀୟ ଜୀବନର ଉପୁରିଆ ଢାଞ୍ଚାକୁ (ବାହ୍ୟାଡମ୍ବର) ମୁଁ ତ୍ୟାଗ କରିଥିଲି । ଇଂରେଜମାନଙ୍କର କେତେକ ପ୍ରଶଂସନୀୟ ଗୁଣ ମୁଁ କାର୍ଯ୍ୟରେ ଅନୁସରଣ କରିଥିଲି । ଉଦାହରଣସ୍ୱରୂପ ସେମାନଙ୍କର ସମୟାନୁବର୍ତ୍ତିତା (Punctuality), କର୍ତ୍ତବ୍ୟନିଷ୍ଠା ଓ ଶ୍ରମ ପ୍ରତି ସମ୍ମାନ । ଶେଷୋକ୍ତ ବିଷୟରେ କହିବାକୁ ଗଲେ କୌଣସି ଜଣେ ଲାବୋରେଟରୀ ଆସିଷ୍ଟାଣ୍ଟଙ୍କର ଟେବୁଲ ସଜାଡିବାର ଥିଲେ ବା ଆଲମାରୀକୁ ପୋଛାଇବାର ଥିଲେ ମୁଁ ତାଙ୍କୁ ଯାଇ ସେଥିରେ ସାହାଯ୍ୟ କରୁଥିଲି । ମୋର ଯେତେକ ବ୍ୟକ୍ତିଗତ କାର୍ଯ୍ୟ ବିନା ଚାକର ସାହାଯ୍ୟରେ ହୋଇପାରିବ ମୁଁ ତାକୁ ନିଜେ କରୁଥିଲି । ଏହା ମଧ୍ୟରେ ଲୁଗା ସଫା, ଘର ସଫା, ବାସନ ଧୁଆ ଅନ୍ତର୍ଭୁକ୍ତ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଜଣେ ଶିକ୍ଷକପକ୍ଷରେ ଭାରତୀୟ ଢଙ୍ଗରେ ଚଳିବା ଭଲ ବୋଲି ମନେ କରାଯାଉଥିଲେ ମଧ୍ୟ ଅନ୍ୟ କ୍ଷେତ୍ରରେ ଏପରି ପରିବର୍ତ୍ତନ କେବେହେଲେ ଭଲ ଫଳ ଦିଏ ନାହିଁ । ମୋ ଯୁକ୍ତିର ସମର୍ଥନରେ ଏଠାରେ ମୁଁ ଏକ ଉଦାହରଣ ଦେଇପାରେ । ଶ୍ରୀ ସାରଙ୍ଗଧର ଦାସ ଚିନି ତିଆରି କରିବା ବିଷୟରେ ବିଶେଷ ଜ୍ଞାନ ଲାଭ କରି ଆମେରିକାରୁ ଫେରିଥାନ୍ତି । ସେ ଜଣେ ଆମେରିକାନ୍ ମହିଳାଙ୍କୁ ବିବାହ କରିଥାନ୍ତି ଓ ସେ ମହିଳା ମଧ୍ୟ ତାଙ୍କ ସହିତ କଟକ ଆସିଥାନ୍ତି । ଆମେ ଶୁଣିଥିଲୁ ଯେ, ଏହି ମହିଳା ଶ୍ରୀ ଦାସଙ୍କୁ ଭାରତ ଫେରି ଆସି ତାଙ୍କର ଜ୍ଞାନକୁ ଦେଶର ଉପକାରପାଇଁ ବିନିଯୋଗ କରିବା ନିମନ୍ତେ ପ୍ରବର୍ତ୍ତାଇ ଥିଲେ । ଶ୍ରୀ ଦାସ ଗୋଟିଏ ଆଖୁଗୃହ ଫାର୍ମ ଓ ଚିନି କାରଖାନା ସ୍ଥାପନ କରିବାପାଇଁ ଚେଷ୍ଟା କରିଥିଲେ । କିନ୍ତୁ ଏଥିପାଇଁ ଆବଶ୍ୟକ ପୁଞ୍ଜି ସେ ଯୋଗାଡ଼ କରି ପାରି ନ ଥିଲେ । ମୋର ମନେ ହୁଏ, ତାଙ୍କର ଏହି ବିଫଳତାର ଏକ କାରଣ ହେଉଛି, ସାହେବ ଢଙ୍ଗରୁ ଆସି ଭାରତୀୟ ଢଙ୍ଗରେ ଚଳିବା । କାରଣ ସେତେବେଳେ

ଧନିକମାନେ ପାଶ୍ଚାତ୍ୟ ବେଶଭୂଷା ଓ ଖ୍ରୀଷ୍ଟୀୟ ଚାଲଚଳଣିର ପକ୍ଷପାତୀ ଥିଲେ । ସେମାନେ ଭାବିଲେ, ଶ୍ରୀ ଦାସ ବୋଧହୁଏ ଆମେରିକାରେ ତାଙ୍କ ଶିକ୍ଷାରେ କୃତକାର୍ଯ୍ୟ ହୋଇ ନ ପାରି ଭାରତକୁ ଫେରିଆସିଛନ୍ତି ଓ ଭାରତୀୟ ଜୀବନ ସହିତ ନିଜକୁ ଅଭ୍ୟସ୍ତ କରିବାପାଇଁ ଲାଗିଛନ୍ତି ।

ଶ୍ରୀ ଦାସ ଏଥିରେ ନିରୁତ୍ସାହିତ ନ ହୋଇ ନିଜ ବାଟରେ ଦେଶମାତୃକାର ସେବା କରିଥିଲେ ଓ ତାଙ୍କର ସମଗ୍ର ଜୀବନ ଦେଶ ସେବାରେ ନିୟୋଜିତ କରିଥିଲେ ।



# ରେଭେନ୍ସା କଲେଜରେ କେତେକ ନୂଆ ପରୀକ୍ଷା

ଏବେ ପୁଣି ରେଭେନ୍ସା କଲେଜ କଥା କହୁଛି । ହଷ୍ଟେଲ ୱାର୍ଡେନ୍ ଭାବରେ ମୁଁ ଛାତ୍ରମାନଙ୍କୁ ଜାଣିବାପାଇଁ ଓ ସେମାନଙ୍କ ସୁହୃଦା ସହିତ ନିଜକୁ ପରିଚିତ କରିବାପାଇଁ ଉଦ୍ୟମ କଲି । ଏହି ଲକ୍ଷ୍ୟରେ ପ୍ରତି ରବିବାର ସନ୍ଧ୍ୟାରେ ମୋ ଘରକୁ ସବୁ ଛାତ୍ରଙ୍କୁ ସାଧାରଣ ଭାବରେ ନିମନ୍ତ୍ରଣ କରୁଥିଲି । କେତେଥର ଛାତ୍ରମାନେ ଆସିଲେ ଓ ତାଙ୍କ ସହିତ ଆଲୋଚନା ହେଉଥିଲା । କିନ୍ତୁ କାଳକ୍ରମେ ସେମାନଙ୍କର ଆସିବା କମିଗଲା ଓ ଏହି ସାନ୍ଧ୍ୟ ବୈଠକ ଆଉ ହୋଇପାରିଲା ନାହିଁ ।

ଯେତେବେଳେ ଶ୍ରୀ ତ୍ରିପାଠୀ ଓ ମୁଁ ଦୁଇ ହଷ୍ଟେଲର ୱାର୍ଡେନ୍‌ରୂପେ ଦାୟିତ୍ୱ ନେଲୁ ହଷ୍ଟେଲର ମେସ୍ ଛାତ୍ରମାନଙ୍କ ପରିଚାଳନାରେ ଥିଲା, ଅର୍ଥାତ୍ ପ୍ରତ୍ୟେକ ହଷ୍ଟେଲରେ ଗୁଡ଼ିଏ ମେସ୍ ଥିଲା ଓ ପ୍ରତ୍ୟେକ ମେସ୍‌ର ସଭ୍ୟମାନେ ସେମାନଙ୍କ ଭିତରୁ ଜଣଙ୍କୁ ପରିଚାଳକରୂପେ ବାଛୁଥିଲେ । କେତେଜଣ ସଭ୍ୟ ଠିକ୍ ସମୟରେ ସେମାନଙ୍କର ଦେୟ ଦେଇପାରୁ ନ ଥିବା କାରଣରୁ ମାସ ଶେଷକୁ ମେସ୍‌ଗୁଡ଼ିକର ଖାଦ୍ୟ ବ୍ୟବସ୍ଥା ଅର୍ଥାଭାବ ଯୋଗୁଁ ଖରାପ ହୋଇପଡ଼ୁଥିଲା ଓ ହଷ୍ଟେଲ ଛାତ୍ରମାନେ ଠିକ୍ ସମୟରେ ଖାଇବାପାଇଁ ଅସୁବିଧା ଭୋଗୁଥିଲେ । ଏ ସବୁ ଅସୁବିଧା ଦୂର କରିବାପାଇଁ ଆମେ ସାଧାରଣ ମେସ୍ ବ୍ୟବସ୍ଥା ପ୍ରଚଳନ କଲୁ । ପ୍ରତ୍ୟେକ ହଷ୍ଟେଲପାଇଁ ଜଣେ ଜଣେ ପରିଚାଳକ ନିଯୁକ୍ତ ହେଲେ । ପ୍ରତ୍ୟେକ ମାସ ୧୫ ତାରିଖ ସୁଦ୍ଧା ଛାତ୍ରାବାସର ଛାତ୍ରମାନଙ୍କୁ ତାଙ୍କ ମେସ ଦେୟ ଦେବାକୁ ହେଉଥିଲା ଯାହାଫଳରେ ଅର୍ଥାଭାବଜନିତ ଅସୁବିଧା ଆଉ ଦେଖାଦେଲା ନାହିଁ । ପ୍ରଥମରୁ ଗୋଟିଏ ରୋଷେଇ ବ୍ୟବସ୍ଥା ଚଳିଲା । କିନ୍ତୁ ପରେ ଦେଖାଗଲା ଯେ ଛାତ୍ରବାସର ସବୁ ଛାତ୍ରଙ୍କପାଇଁ ଏହାର ପରିଚାଳନା ସୁବିଧାଜନକ ନୁହେଁ । ତେଣୁ ଆମେ ଗୋଟିଏ ରୋଷେଇ ନ କରି କେତେଗୁଡ଼ିଏ ମେସ୍‌ରେ ବିଭକ୍ତ କରିଦେଲୁ । ଅର୍ଥାତ୍ ୧୫।୨୦ ଜଣ ଛାତ୍ରଙ୍କୁ ନେଇ ଗୋଟିଏ ଗୋଟିଏ ମେସ୍ ସୃଷ୍ଟି ହେଲା । ସର୍ବୋପରି ପରିଚାଳନା ଦାୟିତ୍ୱ ରହିଲା

ହଷ୍ଟେଲ କର୍ତ୍ତୃପକ୍ଷଙ୍କର । ତାଙ୍କୁ ଏଥିରେ ସାହାଯ୍ୟ କଲେ ପ୍ରତି ମେସ୍‌ର ଜଣେ ଜଣେ ଛାତ୍ର ପ୍ରତିନିଧି । ମେସ୍ ଦେୟ ପୂର୍ବରୁ ଯେପରି ଆଦାୟ କରାଯାଉଥିଲା ବର୍ତ୍ତମାନ ସେହିପରି ହେଲା । ଏ ବ୍ୟବସ୍ଥା ଖୁବ୍ ସନ୍ତୋଷଜନକ ପ୍ରମାଣିତ ହେଲା ଏବଂ ଏବେ ମଧ୍ୟ ଏହା ସନ୍ତୋଷଜନକ ଭାବରେ ଚାଲିଛି ।

ଅନ୍ୟ ଏକ ସଂସ୍ଥା ମୁଁ ସଫଳତା ସହିତ ଚଳାଇବାପାଇଁ ଉଦ୍ୟମ କଲି । ତା' ହେଉଛି, ଅଭାବଗ୍ରସ୍ତ ଛାତ୍ରମାନେ ନିଜର ପରିଶ୍ରମଦ୍ୱାରା କିପରି କିଛି ଉପାର୍ଜନ କରିପାରିବେ । ଏଥିପୂର୍ବରୁ କୌଣସି ଏକ ସଭାରେ ଯୋଗଦେବାପାଇଁ ମୁଁ ବାଙ୍ଗାଲୋର ଯାଇଥିଲି । ଆମେ ଯେଉଁ ହୋଟେଲରେ ରହୁଥିଲୁ ସେଠାରେ କେତେକ ଛାତ୍ର ଅତିଥିମାନଙ୍କୁ ଖାଇବାକୁ ଦେବାରେ ସାହାଯ୍ୟ କରି ସାମୟିକ କର୍ମୀ ଭାବରେ କିଛି ରୋଜଗାର କରୁଥିଲେ । ଏଥିରେ ପ୍ରଭାବିତହୋଇ ଓ ଆମେରିକାରେ ଛାତ୍ରମାନେ କିପରି ସାମୟିକ କାର୍ଯ୍ୟକରି ଅର୍ଥ ଉପାର୍ଜନ କରନ୍ତି ତାହା ଅଧ୍ୟୟନ କରି ମୁଁ ଭାବିଲି ଯେ ଆମର ହଷ୍ଟେଲମାନଙ୍କରେ ଦରିଦ୍ର ଛାତ୍ରମାନଙ୍କୁ ସାହାଯ୍ୟକରିବା-ପାଇଁ କୌଣସି ବ୍ୟବସ୍ଥା ପ୍ରଚଳନ କରାଯାଇପାରେ । ବାଙ୍ଗାଲୋରରୁ ଫେରି ମୁଁ ପ୍ରିନ୍ସିପାଲଙ୍କୁ ଏ ପ୍ରସ୍ତାବ ଦେଲି । ପ୍ରସ୍ତାବଟି ହେଲା, ଛାତ୍ରାବାସର ଯେଉଁ ଛାତ୍ରମାନେ ଇଚ୍ଛା କରିବେ କଲେଜର ବ୍ଲାଙ୍କ ପରୀକ୍ଷା ଖାତା ସିଲାଇ କରିପାରିବେ । ସେତେବେଳେ ଏ ଧରଣର ପରୀକ୍ଷାଖାତାର ସଂଖ୍ୟା ଥିଲା ବେଶି । ଲାମ୍ବର୍ଟ ସାହେବ ପ୍ରିନ୍ସିପାଲ ଥିଲେ । ସେ ଏ ପ୍ରସ୍ତାବକୁ ଗ୍ରହଣ କରି ସେଥିପାଇଁ କିଛି ପ୍ରାଥମିକ ଖର୍ଚ୍ଚ ମଧ୍ୟ ମଞ୍ଜୁର କଲେ । ଗରିବ ଛାତ୍ରମାନେ ଏ କାର୍ଯ୍ୟ କରିବାଦ୍ୱାରା ସେମାନଙ୍କର ଦାରିଦ୍ର୍ୟ ପ୍ରକଟିତ ହେବା ଭୟରେ ଏଥିପାଇଁ ଆଗଭର ହେଲେ ନାହିଁ । ତେଣୁ ଯେଉଁ ଛାତ୍ରମାନେ ଧନୀ ପରିବାରରୁ ଆସିଥିଲେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଏ କାର୍ଯ୍ୟ କରିବାପାଇଁ ମୁଁ ପ୍ରବର୍ତ୍ତାଇଲି; ଏଥିପାଇଁ ସ୍ୱେଚ୍ଛା ପ୍ରଣୋଦିତ ଭାବରେ ଆସିଥିବା କେତେକଙ୍କର ନାମ ମୁଁ ଏଠାରେ ଉଲ୍ଲେଖ କରୁଛି । ସେମାନେ ହେଲେ, ଡେପୁଟି ମାଜିଷ୍ଟ୍ରେଟ୍ ଶ୍ରୀ ଅଭୟ ପ୍ରସାଦ ଦାସଙ୍କ ପୁତ୍ର ଶ୍ରୀ ଅଜିତ ପ୍ରସାଦ ଦାସ, କଟକ ଜିଲ୍ଲାର ଏକ ଧନୀ ପରିବାରରୁ ଆସିଥିବା ଓ ପରେ ଡାକ ତାର ବିଭାଗର ଡେପୁଟି ଡିରେକ୍ଟର ଜେନେରାଲ ହୋଇଥିବା ଶ୍ରୀ ନିମାଇ ଚରଣ ଦାସ ଓ ସୁଖ୍ୟାତ ଡେପୁଟି ମାଜିଷ୍ଟ୍ରେଟ ଶ୍ରୀ ରାଜକିଶୋର ଦାସଙ୍କ ପୁତ୍ର ଶ୍ରୀ ନିକୁଞ୍ଜ କିଶୋର ଦାସ । ଏମାନେ କାର୍ଯ୍ୟ କରିବାର ଦେଖି ଅନ୍ୟ ଯେଉଁମାନେ ଆର୍ଥିକ ଦିଗରୁ ସ୍ୱଚ୍ଛଳ ନ ଥିଲେ, ଏହି କାମ କରିବାପାଇଁ ବାହାରିପଡିଲେ । ଖୁବ୍ ସଫଳତାର ସହିତ

ବର୍ଷ ବର୍ଷ ଧରି ଏହା ଚାଲିଲା । ପରେ ଯେତେବେଳେ ଏହା ବନ୍ଦ ହୋଇଗଲା, ତା'ର କାରଣ ହେଲା, କେତେଗୁଡ଼ିଏ ବ୍ଲାଙ୍କ ପରୀକ୍ଷା ଖାତା ଚୋରି ହୋଇଯାଇ ପରୀକ୍ଷାବେଳେ ଅସତ୍ ଉଦ୍ଦେଶ୍ୟରେ ବ୍ୟବହୃତ ହେଲା । ଏହା ଏକ ଦୁର୍ଭାଗ୍ୟର ବିଷୟ । ଭାରତରେ ଏହା ଏକ ସାଧାରଣ ବିଷୟ ହୋଇଗଲାଣି ଯେ କିପରିଭାବରେ ଅସଦାଚରଣର ପ୍ରତିକାର ହୋଇପାରିବ ତାହା ଚିନ୍ତା ନ କରି ଆମେ କୌଣସି ଭଲ ବ୍ୟବସ୍ଥାକୁ ଚଳାଇ ରଖିପାରୁନାହୁଁ । ଏହିପରି ଭାବରେ ଦରିଦ୍ର ଛାତ୍ରଗଣ ଶାରୀରିକ ଶ୍ରମଦ୍ୱାରା ଯେଉଁ ଉପାର୍ଜନର ଉଦ୍ୟମ କରୁଥିଲେ ତାହା ଚିରଦିନପାଇଁ ବନ୍ଦ ହୋଇଗଲା ।

ଦରିଦ୍ର ଛାତ୍ରମାନଙ୍କୁ ସାହାଯ୍ୟ କରିବାପାଇଁ ମୁଁ ମୋର ହଷ୍ଟେଲରେ ଲେଣ୍ଡିଂ ଲାଇବ୍ରେରୀ ବ୍ୟବସ୍ଥା ପ୍ରଚଳନ କଲି । ମୁଁ ଦେଖିଲି ଯେ, ଅଭାବଗ୍ରସ୍ତ ଛାତ୍ରମାନେ ମୂଲ୍ୟବାନ ବା ସାଧାରଣ ମୂଲ୍ୟର ପୁସ୍ତକ କିଣିପାରୁ ନାହାନ୍ତି । ଲେଣ୍ଡିଂ ଲାଇବ୍ରେରୀ ପ୍ରଚଳନର ଉଦ୍ଦେଶ୍ୟ ହେଲା, ବିଭିନ୍ନ ପଢ଼ାବହିରୁ କେତେଗୁଡ଼ିଏ କିଣି ରଖିବା ଓ ବର୍ଷକର ବ୍ୟବହାରପାଇଁ ସାମାନ୍ୟ ଅର୍ଥରେ ଛାତ୍ରମାନଙ୍କୁ ତାହା ଧାର ସ୍ୱରୂପ ଦେବା । ବହିର ମୂଲ୍ୟ ଅନୁଯାୟୀ କେତେ ଟଙ୍କା ଦେବାକୁ ହେବ ତାହା ସ୍ଥିର କରାଯାଉଥିଲା । କିନ୍ତୁ ତାହା ଛାତ୍ରମାନଙ୍କର ଶକ୍ତିର ବହିର୍ଭୂତ ହେଉ ନଥିଲା । ବର୍ଷ ଶେଷକୁ ବହି ଫେରାଇବାକୁ ହେଉଥିଲା ଓ ବାର୍ଷିକ ଦେୟ ଦେଲେ ଆଉ ଗୋଟିଏ ବର୍ଷ ପାଇଁ ଦିଆଯାଉଥିଲା । ପାଞ୍ଚ ଦଶ ବର୍ଷ ଭିତରେ ଯେପରି ବହିର ମୂଲ୍ୟଟି ମିଳି-ପାରିବ ସେହି ଲକ୍ଷ୍ୟରେ ଏହି ଦେୟ ସ୍ଥିର କରାଯାଉଥିଲା । ପ୍ରଥମେ ପ୍ରିନ୍ସିପାଲ୍ ଦୁଇ ଶହ ଟଙ୍କା ମଞ୍ଜୁର କଲେ ଓ ଏହି ବ୍ୟବସ୍ଥାର ପ୍ରଚଳନ ହେଲା । କ୍ରମେ ଏହା ଲୋକପ୍ରିୟ ହୋଇ ଓଡ଼ିଶାର ବିଭିନ୍ନ କଲେଜକୁ ବ୍ୟାପିଥିବା ଆନନ୍ଦର ବିଷୟ । ପରେ ଯେତେବେଳେ ମୁଁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଉପକୁଳପତି ଭାବରେ ଯୋଗ ଦେଲି ସେଠାରେ ମଧ୍ୟ ମୁଁ ଏହି ବ୍ୟବସ୍ଥା ପ୍ରଚଳନ କଲି । କେତେକ କ୍ଷେତ୍ରରେ ଯେ ଏହାର ଅସଦ୍ ବ୍ୟବହାର ନ ହୋଇଛି ତାହା ନୁହେଁ । କେତେକ ଛାତ୍ର ଧାର ସୂତ୍ରରେ ବହି ନେଇ ଫେରାନ୍ତି ନାହିଁ । ଏପରି ଅସଦାଚରଣ ବନ୍ଦକରିବା-ପାଇଁ ଆବଶ୍ୟକ ବ୍ୟବସ୍ଥା ମଧ୍ୟ ଗ୍ରହଣ କରାଗଲା ।

ମୋର ହଷ୍ଟେଲରେ ରହିବା ସମୟ ମଧ୍ୟରେ ଏକ ଆମୋଦକର ଘଟଣାର ଉଲ୍ଲେଖ କରୁଛି । ଉଦ୍ଭିଦବିଜ୍ଞାନର ଅଧ୍ୟାପକ ଭାବରେ ମୁଁ କଲେଜ ହତା ଦାୟିତ୍ୱରେ ଥିଲି । ଆମ ସମୟ ପର୍ଯ୍ୟନ୍ତ କଲେଜର ବେହେରାମାନେ ହତା ଭିତରେ ଗାଈ ରଖି

ଛାତ୍ର ଓ ଅଧ୍ୟାପକମାନଙ୍କୁ ଦୁଧ ବଣ୍ଟନ କରୁଥିଲେ । ଛାତ୍ରାବାସର ରୋଷେଇଘର ପଛରେ ସେମାନେ ଗାଈ ବାନ୍ଧି ଅତି ଅପରିଷ୍କାର କରୁଥିଲେ । ସେତେବେଳେ ଡିକ୍‌ସନ୍ ସାହେବ ପ୍ରିନ୍ସିପାଲ୍ ଥାଆନ୍ତି । ମୁଁ ତାଙ୍କୁ ପ୍ରସ୍ତାବ ଦେଲି ଯେ କଲେଜର ବେହେରାମାନଙ୍କର ଗାଈ ରଖିବାପାଇଁ ଗୋଟିଏ ଗୁହାଳ କରି ଦିଆଯାଉ । ଡିକ୍‌ସନ୍ ସାହେବ ଏହାର ଘୋର ବିରୋଧ କଲେ, ଏପରିକି କଲେଜ ବେଢ଼ା ମଧ୍ୟରେ ଆଉ କେହି ଗାଈ ବାନ୍ଧି ପାରିବେ ନାହିଁ ବୋଲି ମଧ୍ୟ କହିଲେ । ମୁଁ ଯୁକ୍ତି କଲି ଯେ କଲେଜ ଭିତରେ ଯେଉଁମାନେ ରହୁଛନ୍ତି ସେମାନଙ୍କର ଦୁଧ କିଣିବା ଦରକାର । ଗଉଡ଼ମାନଙ୍କର ଏକ ସାଧାରଣ କାର୍ଯ୍ୟ ହେଲା ଦୁଧରେ ପାଣି ମିଶାଇବା । ବାହାରୁ ଯେଉଁ ଗଉଡ଼ମାନେ ଦୁଧ ନେଇ ଆସିବେ, ସେ ଯେ କୌଣସି ସ୍ଥାନର ପାଣି ଦୁଧରେ ମିଶାଇଦେବେ । ଆମେ ଯଦି କଲେଜ ବେହେରାମାନଙ୍କୁ ଗାଈ ରଖିବାପାଇଁ ଅନୁମତି ଦେଉ ସେମାନେ ପାଣି ମିଶାନ୍ତୁ ପଛକେ କଲେଜ ପାଣିକଳରେ ଆସୁଥିବା ପାଣି ମିଶାଇବେ । ତେଣୁ ଏଥିରେ ରୋଗଜୀବାଣୁ ସଂକ୍ରମଣର କମ୍ ଆଶଙ୍କା ରହିବ । ଏଥିରେ ଡିକ୍‌ସନ୍ ସାହେବ ମନ ବୁଝିଗଲା ଓ କଲେଜ ବେଢ଼ାରେ ଗୋଟିଏ ଗୁହାଳ ତିଆରି ହୋଇଗଲା ।

ଆଉ ଏକ ବିଷୟ ଯାହା କି ମୋ ଉଦ୍ୟମରେ ହୋଇପାରିଥିଲା, ତାହା ହେଉଛି କଲେଜ ସୋସାଇଟିର ସମ୍ବିଧାନ ବଦଳି ଏକ ନୂଆ ସମ୍ବିଧାନ ପ୍ରଚଳିତ ହେବା । କେମ୍ବ୍ରିଜ ଓ ଅକ୍ସ୍‌ଫୋର୍ଡର ଛାତ୍ର ସମିତିମାନଙ୍କ ପରି ରେଭେନ୍ସା କଲେଜ ଛାତ୍ର ସମିତିର ନାମ ପରିବର୍ତ୍ତିତ ହୋଇ ଛାତ୍ର ୟୁନିୟନ୍ ରଖାଗଲା । ଏହାର ସଭାପତି ଛାତ୍ର ଓ ପରାମର୍ଶଦାତା ଜଣେ ଅଧ୍ୟାପକ ରହିଲେ । କାର୍ଯ୍ୟକାରୀ କମିଟି ବିଭିନ୍ନ ଶ୍ରେଣୀର ଛାତ୍ର ପ୍ରତିନିଧିମାନଙ୍କୁ ନେଇ ଗଠିତ ହେଲା । ଭାରତ ସରକାର ଏକ ଗଣତାନ୍ତ୍ରିକ ସଂସ୍ଥା ଚଳାଇବାପାଇଁ ଅଗ୍ରସର ହେଉଥିବାଯୋଗୁଁ ଶିକ୍ଷା କ୍ଷେତ୍ରରେ ଭବିଷ୍ୟତ ସମାଜର ନେତା ଛାତ୍ରମାନେ ଗଣତାନ୍ତ୍ରିକ ପନ୍ଥାରେ ତାଲିମ ପାଇବା ଆବଶ୍ୟକ । ଏହି ନିର୍ବାଚନ ପଦ୍ଧତି ସବୁ କଲେଜରେ ପ୍ରଚଳିତ ହୋଇଛି । ଛାତ୍ରମାନଙ୍କୁ ଗଣତାନ୍ତ୍ରିକ ପନ୍ଥାରେ ତାଲିମ କରିବା ଉଦ୍ଦେଶ୍ୟ ରଖି ଏହି ବ୍ୟବସ୍ଥା ପ୍ରଚଳନ କଲାବେଳେ ସାଧାରଣ ଭାରତୀୟ ମନୋବୃତ୍ତି ଯାହା, ସେଥିରୁ ଏହାର ଅସଦ୍‌ବ୍ୟବହାର ହୋଇପାରେ, ଏ ଧାରଣା କରାଯାଇ ନ ଥିଲା । ସାଧାରଣ ଭାରତୀୟ ମନୋବୃତ୍ତି ହେଉଛି, କୌଣସି ଏକ ପ୍ରଣାଳୀର ଖୋଳପାଟିକୁ ଗ୍ରହଣ କରି ଶସ ତକ ଛାଡ଼ିଦେବା । ଏହି ମନୋବୃତ୍ତି ଯୋଗୁଁ ଭାରତର ଗଣତାନ୍ତ୍ରିକ ପଦ୍ଧତିରେ ଅଧୋ-

ଗଡ ଘଡି ବର୍ତ୍ତମାନ ମବୋଫେସି ବା ସ୍ପୈଶ୍ୱରଗ୍ୱର ଗ୍ରହୁଛି । ଏଠାରେ ଆହୁରି ଏକ ଦୃଷ୍ଟାନ୍ତ ଦିଆଯାଇପାରେ । ଦେଶରେ ଏକ ସାଧାରଣ ଶ୍ରମିକ ମଧ୍ୟ ଏବେ ହାତଘଣ୍ଟା ବ୍ୟବହାର କଲେଣି । କିନ୍ତୁ ଘଣ୍ଟା ବ୍ୟବହାର କରିବାର ଯେଉଁ ମୌଳିକ ତତ୍ତ୍ୱ ହେଲା ସମୟାନୁବର୍ତ୍ତିତା ତାହା କ୍ୱଚିତ୍ ଦେଖାଯାଉଛି । ଏହି ମନୋବୃତ୍ତିଯୋଗୁଁ ଛାତ୍ର ୟୁନିୟନ୍‌ମାନଙ୍କର ପ୍ରକୃତ ସାରତତ୍ତ୍ୱ କୁଆଡ଼େ ଯାଇ ତାହା ସବୁ ଶ୍ରମିକ ୟୁନିୟନ୍‌ରୂପେ ବ୍ୟବହୃତ ହେଲାଣି ।

ଛାତ୍ର-ଶିକ୍ଷକ ସମ୍ପର୍କ ଆଲୋଚନା କଲାବେଳେ ଆଉ କେତେକ କାର୍ଯ୍ୟକ୍ରମର ଉଲ୍ଲେଖ ଏଠାରେ କରିବା ଉଚିତ ହେବ । ଯେତେବେଳେ ଡକ୍ଟର ବାବା କର୍ତ୍ତାର ସିଂ ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ୍ ଥିଲେ, ସେତେବେଳେ ଛାତ୍ର ଶିକ୍ଷକଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠାପାଇଁ ଆମେ ଏକ କାର୍ଯ୍ୟକ୍ରମର ଚିନ୍ତା କଲୁ । ଆମେ ଛାତ୍ରମାନଙ୍କୁ କେତେଗୁଡ଼ିଏ ଗୋଷ୍ଠୀରେ ବିଭକ୍ତ କରିଦେଲୁ । ପ୍ରତ୍ୟେକ ଗୋଷ୍ଠୀରେ ପ୍ରଥମବାର୍ଷିକ ଛାତ୍ରମାନଙ୍କଠାରୁ ସ୍ନାତକୋତ୍ତର ଛାତ୍ରଙ୍କ ପର୍ଯ୍ୟନ୍ତ ସବୁ ଶ୍ରେଣୀର ଛାତ୍ର ଥିଲେ ଓ ତାକୁ ଜଣେ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ରଖାଯାଉଥିଲା । ଏହି ଶିକ୍ଷକଙ୍କୁ କେମ୍ବ୍ରିଜ ପ୍ରଣାଳୀର ଅନୁକରଣରେ ଟିଉଟର୍ କୁହାଯାଉଥିଲା । ଟିଉଟର୍ ତାଙ୍କର ବିଭାଗର ଛାତ୍ରଙ୍କ ସହିତ ସପ୍ତାହରେ ଥରେ ସେମାନଙ୍କ ସୁବିଧା ଅସୁବିଧା ବିଷୟରେ ଆଲୋଚନା କରିବେ । ପିଲାମାନେ ଯେଉଁ ମେସ୍‌ରେ ବା ବସାଘରେ ଥିବେ ସେଠାକୁ ସେ ଯାଇ ତାଙ୍କୁ ସାହାଯ୍ୟ କରିବେ । ୧୯୪୫ ମସିହାରେ ମୁଁ ରେଭେନ୍‌ସା କଲେଜ ଛାଡ଼ିବା ପର୍ଯ୍ୟନ୍ତ ଏହି ପ୍ରଣାଳୀ ଚାଲୁଥିଲା । ଏବେ ଆଉ ଚାଲୁଛି କି ନାହିଁ ମୁଁ ଜାଣେ ନାହିଁ ।

ଆହୁରି ଏକ ପ୍ରଥା ମୁଁ ଚଳାଇବାର ଉଦ୍ୟମ କରିଥିଲି । ତାହା ହେଉଛି, ପ୍ରଥମ ବାର୍ଷିକ ଶ୍ରେଣୀରେ ଯୋଗ ଦେଇଥିବା ନୂଆ ପିଲାମାନଙ୍କୁ ମସକପାଇଁ କଲେଜ ଜୀବନ ସହିତ ଅଭ୍ୟସ୍ତ ହେବା ନିମନ୍ତେ ତାଲିମ ଦେବା । କଳା, ବିଜ୍ଞାନ ଓ ଅନ୍ୟାନ୍ୟ ବିଭାଗରେ ବକ୍ତୃତା ଦିଆଯାଉଥିଲା ଓ ଛାତ୍ରମାନଙ୍କୁ ଏହି ସବୁ ବକ୍ତୃତା ଶୁଣିବାପାଇଁ ସ୍ୱାଧୀନତା ଦିଆଯାଇଥିଲା । ଏହି ସବୁ ବକ୍ତୃତା ଶୁଣିବା ପରେ କେଉଁ ବିଷୟ ପ୍ରତି ତାଙ୍କର ଆଗ୍ରହ ଅଛି ଓ କେଉଁ ବିଷୟଟି ନେଲେ ତାଙ୍କର ଭଲ ହେବ ତାହା ପ୍ରତ୍ୟେକ ଛାତ୍ର ସ୍ଥିର କରିପାରୁଥିଲେ । ଏହି ପ୍ରଣାଳୀ କେତେକ ଉଚ୍ଚପଦସ୍ଥ ଶାସନ ବିଭାଗୀୟ କର୍ମଚାରୀଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲା । ଡି ଇ. ରୁବେନ୍, ଆଇ. ସି. ଏସ୍. ଏହିପରି କେତେକ ବକ୍ତୃତା ଶୁଣିବାପାଇଁ ଆସିଥିଲେ । ବର୍ତ୍ତମାନ ବୋଧହୁଏ ଏ ବ୍ୟବସ୍ଥାଟି ବନ୍ଦ ହୋଇଗଲାଣି । □ □